"...ଏଠାକୁ ଆସିବାର ମୋର ମୁଖ୍ୟ ଉଦ୍ଦେଶ୍ୟ
ମୁଁ ଏହି ଭାବରେ ବ୍ୟାଖ୍ୟା କରି ପାରେ—
ଆମ୍ଭମାନଙ୍କ ଶାନ୍ତିର ପ୍ରଚେଷ୍ଟାରେ ମାର୍କିନ ଯୁକ୍ତରାଷ୍ଟ୍ର
ଭାରତ ସହିତ ରହିଛି ଓ ଯୁକ୍ତରାଷ୍ଟ୍ରର ନେତୃବୃନ୍ଦ
ଭାରତର ନେତୃବୃନ୍ଦ ସହ ରହିଛନ୍ତି"।

ମାର୍କିନ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ଡ୍ୱାଇଟ୍ ଡି, ଆଇଜେନ ହାୱାର
ଭାରତରେ ପଦାର୍ପଣର କିଛିକ୍ଷଣ ପରେ ପାଲାମ ବିମାନ ବନ୍ଦରେ,
ନୂଆଦିଲ୍ଲୀ, ଠାରେ ଭାଷଣ । ଡିସେମ୍ବର, ୯, ୧୯୫୯ ।

"…ଭାରତ ଓ ଆମେରିକା ଯେଉଁ ଆଦର୍ଶ ଅନୁସରଣ
କରି ଚାଲିଛି : "ସେହି ଆଦର୍ଶ ହେଲା
ସ୍ୱାଧୀନତାର ଭିତ୍ତିରେ ଶାନ୍ତି ଓ ମୈତ୍ରୀର ପ୍ରତିଷ୍ଠା"
ଏହି ଆଦର୍ଶର ମୂଳକଥା, ମୂଳଭିତ୍ତିଆଦ ହେଲା ସ୍ୱାଧୀନତା"
ଶାନ୍ତିବାଦୀ ରାଷ୍ଟ୍ରମାନଙ୍କ ମଧ୍ୟରେ ଆମ ଦୁଇ ରାଷ୍ଟ୍ର ବିଶ୍ୱାସ
କରେ ଯେ, ପୃଥିବୀରେ ଶାନ୍ତିଠାରୁ ମହତ୍ତର
ଜିନିଷ ରହିଛି । ତା ହେଉଛି-ମାନବ
ଜାତିର ଆଦର୍ଶ, ମାନବିକତାର ବିଶ୍ୱାସ,
ଆଶା ଓ ଆକାଂକ୍ଷା ଏବଂ ବିବେକର ପ୍ରତି ଅମର
ଅନୁଗତ୍ୟ । ସେହି ମହତ୍ତର ଜିନିଷ ହେଲା
ଉଦ୍ଦେଶ୍ୟର ସାଧୁତା, ମୌଳିକ ତତ୍ତ୍ୱ ପ୍ରତି
ଅବିଚଳିତ ନିଷ୍ଠା;
ସତ୍ୟ ଓ ସୁନ୍ଦର ପ୍ରତି ଅନୁରାଗ ଓ ଆଶକ୍ତି ।
ଯେଉଁ ଜାତି ଏହାକୁ ବିଶ୍ୱାସ କରେ
ଏବଂ କାର୍ଯ୍ୟରେ ଲଗାଏ
ପ୍ରକୃତରେ ସେମାନେ ଅମର ବନ୍ଧୁ"।
ସର୍ବୋପରି ଆମ୍ଭେମାନେ ବିଶ୍ୱାସ କରୁଁ
ଯେ କେବଳ ମାତ୍ର
ସ୍ୱାଧୀନତା ମଧ୍ୟରେ ମନୁଷ୍ୟ ପ୍ରକୃତି ଓ
ପୂର୍ଣ୍ଣ ଶାନ୍ତି ଭୋଗ କରିପାରେ ।
ଏଥିରେହିଁ ମନୁଷ୍ୟର ଅଭିଗମ
ଓ ବାସ୍ତବ ବିଧୃତା ଦେଖାଇଏ"।

ପ୍ରେସିଡେଣ୍ଟ ଆଇଜେନ ହାଓ୍ୱାର
ନାଗରିକ ସମ୍ବର୍ଦ୍ଧନା ଉତ୍ତରରେ,
ନୂଆଦିଲ୍ଲୀ, ଡିସେମ୍ବର, ୧୦,୧୯୫୯



"ରାଷ୍ଟ୍ରର ଶ୍ରେଷ୍ଠ କିମ୍ବା ମହାନ ନେତା ରୂପେ ସମ୍ବର୍ଦ୍ଧନା ଜଣାଇବା
ଉଦ୍ଦେଶ୍ୟ ଛଡ଼ା ଏଥିରେ ଅନ୍ତର କିଛି ଅଛି ଯାହା ମଣିଷର ମନ ଅପେକ୍ଷା
ହୃଦୟକୁ ସ୍ପର୍ଶ କରେ । ଇତିହାସର ଯୁଗେ ଯୁଗେ ଆମ୍ଭେମାନେ ଲୋକଙ୍କୁ
ଅସାଧାରଣ ରୂପେ ସମ୍ବର୍ଦ୍ଧନା ଦେବା ଅବସ୍ଥାରେ ଦେଖି ପାରିଛୁଁ ।
"ନବ ଯୁଗର ଆମର ମହାନ ନେତା ବିତ୍ତଶାଳୀ ବା ଅସାଧାରଣ
ସୈନିକ ନୁହନ୍ତି, କିମ୍ବା ସେଥିରେ ଅତି ଉଚ୍ଚ ପଦ ନାହିଁ ।
ତେବେ ବି ଭାରତର କୋଟି କୋଟି ଜନତା ତାଙ୍କ ନିକଟରେ ନତ ମସ୍ତକ
ଏବଂ ତାଙ୍କ ନେତୃତ୍ୱ ଅନୁସରଣ କରିବା ପାଇଁ ଚେଷ୍ଟିତ,
ଆମ୍ଭେମାନେ ସେହି ମାନବଙ୍କୁ ପୂଜା ଦେଉଛୁଁ
ଏବଂ ମୁଁ ଆଶାକରେଁ ଏହି ଭଳି ମାନବର ସମ୍ବର୍ଦ୍ଧନା
ଆଜିର ବିଭିନ୍ନତା ଭରା ଦୁନିଆରେ ଦେଖୁଁ ଓ ଭବିଷ୍ୟତରେ ଦେଉଥିବୁଁ ।
ତେଣୁ ଆମ୍ଭେମାନେ ଆପଣଙ୍କୁ ସମ୍ମାନିତ କରୁଛୁଁ, କାରଣ ଯଥେଷ୍ଟ ଥିଲେ ସୁଦ୍ଧା
ସର୍ବୋପରି ଆପଣ ସହସ୍ର ସହସ୍ର ଜନତାର ହୃଦୟରେ ପ୍ରତିଧ୍ୱନୀ ଶୁଣି ପାରୁଛନ୍ତି ।
ମୋର ଆଶା ଓ ବିଶ୍ୱାସ ଯେଏ ସ୍ଥାନରେ ଆପଣଙ୍କ ଆଗମନ
ଆମ୍ଭମାନଙ୍କ ପ୍ରତି ତଥା ସମସ୍ତଙ୍କ ପ୍ରତି ଆଶୀଷ ଭରା ହେବ" ।

ବିଶ୍ୱ କୃଷି ମେଳା ଉଦଘାଟନ କରି ପ୍ରଧାନମନ୍ତ୍ରୀ
ଶ୍ରୀଯୁକ୍ତ ଜବାହରଲାଲ ନେହେରୁ ରାଷ୍ଟ୍ରପତି
ଶ୍ରୀଯୁକ୍ତ ଆଇଜେନ ହାୱାରଙ୍କୁ ସମ୍ଭାଷଣ ଜଣାନ୍ତି ।



ଭାରତର ଅଗଣିତ ଜନତା ତାଙ୍କୁ ଅଭିନନ୍ଦନ ଜଣାଇବାକୁ ଆସିଥିଲେ । କେତେକ ସ୍ୱତନ୍ତ୍ର ରେଳ ଗାଡ଼ୀଦ୍ୱାରା, କେତେକ ଟ୍ରକ୍, ଘୋଡ଼ାଗାଡ଼ୀ ଓ ବଳଦ ଗାଡ଼ୀ କରି, କେତେକ ଚାଲି ଚାଲି ଓ ଅନ୍ୟ କେତେକ ସାଇକେଲ୍ ଓ ଓଟ ଦ୍ୱାରା ଆସିଥିଲେ । ବିମାନ ଘାଟି ଠାରୁ ଆରମ୍ଭ କରି ଶୋଭାଯାତ୍ରା ଆନନ୍ଦ ମୁଖର ଜନସମୁଦ୍ର ଭିତର ଦେଇ ଧୀରେ ଧୀରେ ନଗରୀ ଆଡ଼କୁ ଅଗଉ ଥାଏ । ଶାନ୍ତିକାମୀ ମାନବ, ଡ୍ୱାଇଟ ଡି, ଆଇଜେନହାୱାର, ମାର୍କିନ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ, ଭାରତରେ ପଦାର୍ପଣ କରିଥିଲେ ।



ରାଷ୍ଟ୍ରପତି କହିଲେ :- "ମୁଁ ଭାରତର ଜଣେ ବନ୍ଧୁ ଭଳି
ଏଦେଶକୁ ଆସିଛି ଏବଂ ଭାରତର ୧୮୦ ସଦସ୍ୟ
ବନ୍ଧୁଙ୍କ ଉଦ୍ଦେଶ୍ୟରେ କହୁଛି"।





"ମୋର ବହୁଦିନର ଇଚ୍ଛା ଥିଲା ଯେ,
ମୁଁ ନିଜେ ଆସି ଭାରତର ଜନଗଣ ପ୍ରତି,
ସେମାନଙ୍କର ସଂସ୍କୃତି,
ସେମାନଙ୍କର ପ୍ରଗତି ପ୍ରତି
ଏବଂ ସ୍ୱାଧୀନ ଜାତି ସମୂହ ଭିତର ସେମାନଙ୍କର ଶକ୍ତିମତ୍ତା ପ୍ରତି
ଆମେରିକାର ଶ୍ରଦ୍ଧା ଜଣାଇବି ।
ମୋର ସେ ଇଚ୍ଛା ପୂର୍ଣ୍ଣ ହେଲା ।"

"ମୁଁ ଏଠାକୁ ଏପରି ଏକ ଜାତିର
ପ୍ରତିନିଧି ରୂପେ ଆସି ଅଛି, ଯେଉଁ ଜାତି
ଅନ୍ୟ ଦେଶର ଭୂମିରୁ ମାଣେ
ହେଲେ ଜମି ଆବଶ୍ୟକ କରେ ନାହିଁ, ଅନ୍ୟ
ଦେଶର ସରକାରକୁ ନିୟନ୍ତ୍ରଣ କରିବାକୁ ଚାହେଁ
ନାହିଁ; ବାଣିଜ୍ୟ ଓ ରାଜନୀତି କ୍ଷେତ୍ରରେ ସାମ୍ରାଜ୍ୟ
ବିସ୍ତାର ଯାହାର ପରିକଳ୍ପନା ନାହିଁ ଅଥବା ଅପର
ଦେଶକୁ ଦବାଇ ରଖି
କ୍ଷମତା ସମ୍ଭୋଗର ଯାହାର କୌଣସି ବାସନା ନାହିଁ ।"





"ମୋର ତରଫରୁ ମୁଁ କହିପାରେଁ, ଶାନ୍ତିର ପଥ, ମାନବ ମର୍ଯ୍ୟାଦାର
ପଥ ପ୍ରଶସ୍ତ କରି ତୋଳିବାକୁ, ଭାବୀ ବଂଶଧରଗଣ ପାଇଁ ଏକ
ସୁନ୍ଦର ଭବିଷ୍ୟତ ଗଢ଼ି ତୋଳିବାକୁ ମୁଁ ଅନ୍ୟ ସମସ୍ତଙ୍କ ସହିତ
ମିଳିତ ହୋଇ ଯଥା ସାଧ୍ୟ ଚେଷ୍ଟା କରିବି"।





"ଭାରତ ଓ ଆମେରିକା ବ୍ୟକ୍ତିର ମର୍ଯ୍ୟାଦା ଉପରେ ଏବଂ ବ୍ୟକ୍ତିର ନିଜସ୍ୱ ଇଚ୍ଛା ମୁତାବକ
ଜୀବନ ଧାରଣର ଓ ଅଧିକାରରେ ବିଶ୍ୱାସ କରେ ।
ସଂଖ୍ୟା ଲଘୁର ନିଜସ୍ୱ ମତାମତ ସ୍ୱୀକାର ଓ ତାହା ସଂରକ୍ଷଣର ଦାବୀ
ଉପରେ ଅମେ ଉଭୟେ ବିଶ୍ୱାସୀ ।
ଶାନ୍ତିପୂର୍ଣ୍ଣ ପନ୍ଥାରେ କ୍ଷୁଦ୍ର ବା ବୃହତ ରାଷ୍ଟ୍ର
ସଶ୍ଳିଷ୍ଟ ଅନ୍ତର୍ଜାତିକ ବିରୋଧ ନିଷ୍ପତ୍ତିରେ
ଏବଂ ବିଶ୍ୱ ସମସ୍ୟାରେ ଆଇନର ରାଜତ୍ୱ ରକ୍ଷାକୁ
ଅମ୍ଭେ ବିଶ୍ୱାସ କରୁଁ ।
ବସ୍ତୁତଃ ଏ ଗୁଡ଼ିକ ଅମ ମଧ୍ୟରେ ମୌଳିକ ବନ୍ଧନ" ।

# ଆଇଜେନହାୱାର କିଏ ?

**ଯେଉଁ** ବ୍ୟକ୍ତି ଭାରତରେ ପାଞ୍ଚଦିନ ରହଣି କାଳ ମଧ୍ୟରେ ଅଗଣିତ ଜନତା ହୃଦୟରେ ଆବେଗର ସ୍ରୋତ ଅଜାଡ଼ି ଦେଇ ପାରିଥିଲେ, ସେ କିଏ ଆଇଜେନହାୱାର ?

ସେ ଯୁକ୍ତରାଷ୍ଟ୍ର ଆମେରିକାର ୩୪ ତମ ରାଷ୍ଟ୍ରପତି । ସେ ସର୍ବ ଯୁଗର ଅଭୂତପୂର୍ବ ଶକ୍ତିଶାଳୀ ସାମରିକ ବାହିନୀର ଅଧିନାୟକ ରୂପେ ନେତୃତ୍ୱର ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । କାନସାସର ଏକ ଛୋଟ ସହରରେ ନିରୀହ ନାଗରିକ ଡେଭିଡ୍ ଓ ଆଇଡା ଛ'ଟି ପୁତ୍ରର ଏକ ପରିବାରକୁ ଅତି କ୍ଷୁଦ୍ର ଆୟରେ ଉନ୍ନତି ପଥରେ ଅଗ୍ରସର କରାଇ ପାରିଥିଲେ । ଏହି ଆଇଜେନ ହାୱାର ମଧ୍ୟ ସେମାନଙ୍କ ପୁଅ ।

ଆମେରିକାର ଚଳଣି ତଥା ସର୍ବଜନବାଞ୍ଛିତ ପ୍ରଥା ଏପରି ରହିଛି ଯେ, ଯେ କୌଣସି ପିଲାର ବଂଶ ଆଭିଜାତ୍ୟ ନ ଥିଲେ ସୁଦ୍ଧା ସେ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି ହୋଇ ପାରିବ । ଅବ୍ରାହମ ଲିଙ୍କନଙ୍କ ପରି ଶ୍ରୀଯୁକ୍ତ ଆଇଜେନ ହାୱାରଙ୍କ ଦୃଷ୍ଟାନ୍ତ ଅବା କ୍ୱଚିତ୍ । ଏହି ପ୍ରଥାଟି କେବଳ ରୂପ କଥା ହୋଇ ରହିନାହିଁ — ହୋଇଛି ବାସ୍ତବ ସତ୍ୟ ।

ରାଷ୍ଟ୍ରପତିଙ୍କ ପିତା ଥିଲେ କଠିନ ପରିଶ୍ରମୀ, ଏବଂ ଭକ୍ତିଶୀଳ ଜର୍ମାନ କୃଷକ ପରିବାରର ବଂଶଧର ଥିଲେ । ତାଙ୍କର ପଣ୍ୟ ଦୋକାନଟି ୧୮୯୦ ମସିହାରେ ରାଷ୍ଟ୍ରପତିଙ୍କ ଜନ୍ମର ଠିକ୍ ପୂର୍ବରୁ ନଷ୍ଟ ହୋଇଗଲା । **ଆଇଜେନହାୱାରଙ୍କ** ବାଲ୍ୟାବସ୍ଥାରେ ଡେଭିଡ ଓ ଆଇଡା ଅଭାବ ଓ ଅନାଟନର କବଳରୁ ସେମାନଙ୍କୁ ରକ୍ଷା କରିବା ନିମନ୍ତେ କଠିନ ଯୁଦ୍ଧ କରିବାକୁ ପଡ଼ିଥିଲା ।

ଡେଭିଡ୍ ଓ ଆଇଡା ଉଭୟେ ଧର୍ମପ୍ରାଣ ଥିଲେ । ସେମାନଙ୍କ ପରିବାର ମଧ୍ୟରେ ଈଶ୍ୱର ଭକ୍ତି ଏବଂ ମନୁଷ୍ୟ ମାନଙ୍କ ପ୍ରତି ଭ୍ରାତୃପ୍ରେମରୁ ଦୃଢ଼ ବିଶ୍ୱାସ ସର୍ବଶ୍ରେଷ୍ଠ ସମ୍ପଦ ଥିଲା । ଆଇଜେନ ହାୱାରଙ୍କ ପ୍ରାଥମିକ ନୈତିକ ଶିକ୍ଷା ତାଙ୍କ ଜୀବନ ଉପରେ ଏକ ଗଭୀର ରେଖାପାତ କରିଥିଲା ଯାହା ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ପରିଦୃଷ୍ଟ ହୁଏ ।

ଏହି କଠିନ ଶ୍ରମଜୀବୀ ପରିବାରଟିରେ ପରମ୍ପରା ଗତ ବିଶ୍ୱାସ, ଅଧ୍ୟବସାୟ ଓ ଦକ୍ଷତା ଉଚ୍ଚରେ ସ୍ଥାନ ଥିଲା । ଆବିଲେନି ଓ କାନସାସରେ ଥିବା କ୍ଷୁଦ୍ର ଘର ଗୁଡ଼ିକରେ ରହିବା ବେଳେ ଆଇଜେନ ହାୱାର ଓ ତାଙ୍କର ଭାଇମାନେ ଖୁବ୍ ପ୍ରତ୍ୟୁଷରୁ ଉଠୁ ଥିଲେ । ତାହାପରେ ଗୃହପାଳିତ ପଶୁମାନଙ୍କ ଯତ୍ନ ନେବାରେ, ନିଆଁ ଚୁଲି ପ୍ରସ୍ତୁତ କରିବାରେ ଓ ଗାଈ ଦୁହିଁବାରେ ସାହାଯ୍ୟ ପ୍ରଭୃତି ନିତ୍ୟ ନୈମିତ୍ତ୍ୟ ଛୋଟ ଛୋଟ କର୍ମ ଗୁଡ଼ିକ ଆରମ୍ଭ ହେଉଥିଲା । ସେମାନେ ମଧ୍ୟ ଘରର ପରିବା ବଗିଚାର ଦାୟିତ୍ୱ ନେଉଥିଲେ । ଏହା ଦ୍ୱାରା ପରିବାରର ଖର୍ଚ୍ଚ ତୁଲିବା ସଙ୍ଗେ ସଙ୍ଗେ, ବଳକା ଜିନିଷ ସହରରେ ବିକ୍ରି ହେଉଥିଲା ।

ବାଲ୍ୟ ବୟସରେ ଡ୍ୱାଇଟ ଡି, ଆଇଜେନ ହାୱାର ମାଆଙ୍କ ଠାରୁ ସମସ୍ତ ଶିକ୍ଷାଲାଭ କରିଥିଲେ ଏବଂ ଏହି ଅନୁଭୂତି ହିଁ ତାଙ୍କର ମହାନ ବ୍ୟକ୍ତିତ୍ୱର ସୂତ୍ରପାତ ହେଲା । ମାତାଙ୍କର ବିଶ୍ୱାସ ଥିଲା କେବଳ କଠିନ ପରିଶ୍ରମ ଦ୍ୱାରା ଆବଶ୍ୟକୀୟ ପଦାର୍ଥଗୁଡ଼ିକ ମିଳିପାରେ । ଆଇଜେନ ହାୱାରଙ୍କ ଦେଶର ଅସୀମ ସବୁଜ ସୁନ୍ଦର ପ୍ରକୃତି ତାଙ୍କର ହୃଦୟରେ ବାଲ୍ୟାବସ୍ଥାରୁ





ସମର ଶିକ୍ଷାର୍ଥୀ ଆଇଜେନହାୱାର

ସେନାବାହିନୀର ସେନାଧ୍ୟକ୍ଷ



ଯୁଦ୍ଧକ୍ଷେତ୍ରରେ ଓ ଅନୁଷ୍ଠାନରେ ଅଭ୍ୟୁତ୍ଥାନ









କୃଷକ          ଶ୍ରୀଯୁକ୍ତ ଓ ଶ୍ରୀଯୁକ୍ତା ଆଇଜେନହାୱାର          ଶିଳ୍ପପ୍ରିୟ ରଙ୍ଗକର






ବିଶ୍ୱ ବିଦ୍ୟାଳୟର ସଭାପତି          ଜନଗଣ ଦ୍ୱାରା ବାଛିତ ନାୟକ

ଡ୍ୱାଇଟ୍ ଡି. ଆଇଜେନହାୱାର ଏହି ସମ୍ମାନପ୍ରଦ କର୍ମଶାଳାର ବିଭିନ୍ନ କର୍ତ୍ତବ୍ୟ ସମାଧାନ କରନ୍ତି





ଧର୍ମ ପ୍ରତ୍ୟୟକୁ ଜାଗ୍ରତ କରିବାରେ ଏକ ଶିକ୍ଷାନୁଷ୍ଠାନ ହୋଇ ଉଠିଥିବ । ମନୁଷ୍ୟ ଯେପରି ଗୋଟିଏ ଗୋଟିଏ ଅବସ୍ଥାରେ ବଢ଼ନ୍ତି ଶିକ୍ଷା ଲାଭ କରେ, ସେହିପରି ପୂର୍ବର ସେହି ଶିକ୍ଷାଗୁଡ଼ିକ ରାଷ୍ଟ୍ରପତିଙ୍କ ହୃଦୟରେ ଦୃଢ଼ ଆଶାବାଦର ଛାପ ପକାଇଥିବ ।

ସେ ହାଇସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଓ୍ୱେଷ୍ଟ ପଏଣ୍ଟ ନାମକ ଏକ ବିଖ୍ୟାତ ସୈନ୍ୟ ଶିକ୍ଷାନିକେତନରେ ପରୀକ୍ଷା ଦେବା ପାଇଁ ଅନୁମତି ପାଇଥିଲେ । ସେଠାକାର କଠୋର ଶୃଙ୍ଖଳା ଓ ଉପଯୁକ୍ତ ଶିକ୍ଷା ପ୍ରଣାଳୀ ତାଙ୍କର ବାଲ୍ୟାବସ୍ଥାର ଶିକ୍ଷାଗୁଡ଼ିକୁ ଅଧିକ ଆଗେଇ ଦେଲା । ତାଙ୍କର ନେତୃତ୍ୱ ଶକ୍ତିର ସୀମା ଏହା ଦ୍ୱାରା ଅନୁରୂପ ପରିବର୍ଦ୍ଧିତ ହୋଇ ଉଠିଲା । ୧୯୧୫ ମସିହାରେ ପଦାତିକ ସୈନ୍ୟ ବାହିନୀର ଦ୍ୱିତୀୟ ସେନାଧ୍ୟକ୍ଷ ରୂପେ ସେ ନିଯୁକ୍ତ ହେଲେ ଏବଂ ସେହି ଦିନଠାରୁ ତାଙ୍କର ଏକ ଦୀର୍ଘ ସୈନିକ ଜୀବନର ଆରମ୍ଭ । ପରବର୍ତ୍ତୀ ୨୫ ବର୍ଷ ମଧ୍ୟରେ ତାଙ୍କୁ ସମସ୍ତ ଅବସ୍ଥା ମଧ୍ୟଦେଇ ଯିବାକୁ ପଡ଼ିଥିବ ଓ ଭବିଷ୍ୟତର ଅସୀମ ପରୀକ୍ଷାର ସମ୍ମୁଖୀନ ହେବା ପାଇଁ ସେ ଏଠାରୁ ସମସ୍ତ ଅନୁଭୂତି ସଂଗ୍ରହ କରିଥିଲେ ।

ସେ ସୁଯୋଗ ଗୋଟିଏ ପରେ ଗୋଟିଏ ଆସି ଦେଖାଦେଲା । ୧୯୪୧ ମସିହା ଡିସେମ୍ବରରେ ଯେତେବେଳେ ରଣଭେରୀ ଆମେରିକାରେ ଶୁଭିଲା, ଆଇଜେନହାଓ୍ୱାରଙ୍କର ପ୍ରତିଭା ଏବଂ ବହୁ ବର୍ଷବ୍ୟାପୀ ଅଭିଜ୍ଞତା "ଜାଣ କପର" ତାଙ୍କୁ କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିଥିଲା, ପ୍ରଥମେ ଓ୍ୱାସିଂଟନ୍‌ରେ ସୈନ୍ୟ ବାହିନୀର ଅଧ୍ୟକ୍ଷମାନଙ୍କ ସହ ଏବଂ ପରେ (ଜୁନ ୧୯୪୨) ଲଣ୍ଡନରେ ଯେତେବେଳେ ଇଉରୋପର ରଙ୍ଗମଞ୍ଚରେ ସେ ସେନାନାୟକ ରୂପେ ନିଯୁକ୍ତ ହେଲେ ।

ଅନେକ ଐତିହାସିକଙ୍କ ମତ ଯେ ଆଇଜେନ ହାଓ୍ୱାର ୨ୟ ବିଶ୍ୱଯୁଦ୍ଧରେ ଜଣେ ଅସାଧାରଣ ସୈନିକ ଥିଲେ । ମିତ୍ର ବାହିନୀର ଅଭିଯାନରେ ଆଇଜେନ ହାଓ୍ୱାର ପ୍ରଧାନ ସେନାନାୟକ ଥିଲେ । ହିଟଲରଙ୍କ ପତନ ପାଇଁ ତାଙ୍କର ମୀମାଂସା ଚୂଡ଼ାନ୍ତ ରୂପେ ଦାୟୀ । ସେ ଯେଉଁ ସୈନ୍ୟ ବାହିନୀ ନରମାଣ୍ଡିକୁ ସମୁଦ୍ର ପଥରେ ପଠାଇଥିଲେ, ତାହା ସେକାଳର ସମସ୍ତଙ୍କ ଠାରୁ ବୃହତ୍ତମ ଥିଲା । କିନ୍ତୁ ତା ପୂର୍ବରୁ ଉତ୍ତର ଆଫ୍ରିକା, ସିସିଲିରେ ସେ ଜୟଯୁକ୍ତ ହୋଇଥିଲେ । ସପକ୍ଷ ସେନାବାହିନୀର କେତେକ ନେତାଙ୍କ ନିଷେଧାଜ୍ଞା ସତ୍ତ୍ୱେ, ସେ ଫ୍ରାନ୍ସ ଆକ୍ରମଣ କରିଥିଲେ । ଏଥିରେ ତାଙ୍କର ବିଜୟ ଘଟିଥିଲା ଓ ଏହି ହେତୁ ସେ ପ୍ରଧାନ ସେନାପତିଙ୍କ ପଦରେ ନିଯୁକ୍ତ ହୋଇଥିଲେ । ତାଙ୍କର ଉତ୍କୃଷ୍ଟତମ ପ୍ରବର୍ତ୍ତନା, ସମ୍ବନ୍ଧ ସ୍ଥାପନର ପଟୁତା ଏବଂ କୌଶଳ ଯୋଗୁ ଭଗ୍ନ ବିଭଗ୍ନ ହୋଇଯାଇଥିବା ମିତ୍ରବାହିନୀର ମଧ୍ୟରେ ସେ ଏକତା ଆଣିପାରିଥିଲେ ।

ଆଇଜେନ ହାଓ୍ୱାର ସଦାସର୍ବଦା ଶିକ୍ଷାପ୍ରତି ବିଶେଷ ଅନୁରକ୍ତ ଥିଲେ । ସେ ଯେତେବେଳେ ଯୁକ୍ତରାଷ୍ଟ୍ର ସେନାବାହିନୀର ପ୍ରଧାନ ସେନାନାୟକ ପଦରୁ ୧୯୪୮ ରେ ଅବସର ଗ୍ରହଣ କଲେ, ତାହାପରେ ଯୁକ୍ତରାଷ୍ଟ୍ରର ସବୁ ପୁରାତନ, ବୃହତ୍ତମ ଓ ଶ୍ରେଷ୍ଠ ବଳଶାଳୀ କଲମ୍ବିଆ ବିଶ୍ୱବିଦ୍ୟାଳୟର ସଭାପତି ରୂପେ ତାହାଙ୍କୁ ନିଯୁକ୍ତ କରାଗଲା । କଳ୍ପନା ଓ ଦୂରଦୃଷ୍ଟି ଦ୍ୱାରା ସେ ତାଙ୍କର କର୍ମପଥରେ ଆଗେଇ ଗଲେ । ୨ ବର୍ଷରୁ ଅଳ୍ପ ସମୟ ମଧ୍ୟରେ ସେହି ବୃହତ୍ତମ ବିଶ୍ୱବିଦ୍ୟାଳୟର ଯେଉଁ କର୍ମ ସେ ସମ୍ପାଦନ କରିଯାଇ ଅଛନ୍ତି, ତାହା ହେଉଛି ଯୁଦ୍ଧ ଏବଂ ଶାନ୍ତି ନାମକ ପ୍ରତିଷ୍ଠାନର ସୂଚନା । ଏହାର ଉଦ୍ଦେଶ୍ୟ—'ଯୁଦ୍ଧ ଯେ ସାମାଜିକ ଜୀବନର ଧ୍ୱଂସର ଅବତାର' ତାର ନିରାକରଣ ନିମନ୍ତେ ଗବେଷଣା ହେବ ।

୧୯୫୨ ମସିହାରେ ସେ ତାଙ୍କର ଜୀବନରେ ପ୍ରଥମେ ରାଜନୀତି କ୍ଷେତ୍ରରେ ପ୍ରବେଶ କଲେ ଏବଂ ସଂଖ୍ୟା ଗରିଷ୍ଠ ଭୋଟ ପାଇଁ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି ପଦରେ ନିର୍ବାଚିତ ହେଲେ । ଠିକ ୪ ବର୍ଷ ପରେ ସେହିପରି ଘଟିଲା, ସେ ପର୍ଯ୍ୟନ୍ତ ଭୋଟ ପାଇଥିବା ପ୍ରାର୍ଥୀମାନଙ୍କ ଅପେକ୍ଷା ସର୍ବାଧିକ ଭୋଟ ଦ୍ୱାରା ଜୟଯୁକ୍ତ ହୋଇ ସେ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିରୂପେ ପୁନର୍ନିର୍ବାଚିତ ହେଲେ ।

ବିଶ୍ୱ ଶାନ୍ତିପାଇଁ ତାଙ୍କର ନିରନ୍ତର ଲକ୍ଷ୍ୟ ରହିଛି । ସେ ୧୯୫୨ ମସିହାରେ କହିଥିଲେ, "ସ୍ୱାଧୀନ ବ୍ୟକ୍ତିର ଶାନ୍ତି ଅମୂଲ୍ୟ ସମ୍ପଦ, ଯୁଦ୍ଧ ଅନୁଭୂତିରୁ ମୁଁ ଏହି ସିଦ୍ଧାନ୍ତ ଲାଭ କରିଅଛି" । ୫ ବର୍ଷ ପରେ ସେ ଜେନେଭାର ଶୀର୍ଷ ସମ୍ମିଳନୀ ରେ କହିଥିଲେ "ଶାନ୍ତିର ଅନୁସନ୍ଧାନ ରାଜନୀତିଜ୍ଞମାନଙ୍କର ଉପଯୁକ୍ତ କର୍ତ୍ତବ୍ୟ" ।

ଶ୍ରୀଯୁକ୍ତ ଡ୍ୱାଇଟ ଡି, ଆଇଜେନ ହାଓ୍ୱାରଙ୍କ ଜୀବନୀ ବାସ୍ତବରେ ଆଧୁନିକ ଆମେରିକାରେ ଏକ ଗାଥା । ପରିଶ୍ରମ ପ୍ରିୟର କର୍ମ ଫଳକୁ ସଂସ୍ଥାପନ । ଜଣେ ପେଶାଦାର ସୈନିକ ଅଥଚ ଜଣେ ପ୍ରତିଭାଶାଳୀ ଦୂରଦୃଷ୍ଟି ସମ୍ପନ୍ନ ରାଜନୀତିଜ୍ଞ । କୋଟି କୋଟି ନର ନାରୀର ଅଲୌକିକ ବୀର ସର୍ବସାଧାରଣଙ୍କ ପାଇଁ ସରଳ ଓ ଅନାଡ଼ମ୍ବର ସ୍ନେହ ରଖିଛନ୍ତି । ସେ ଦଳର ଜଣେ ଯୋଦ୍ଧା ଅଥଚ ଶାନ୍ତିର ତ୍ରାଣ କର୍ତ୍ତା ।

ଏହି ବୈଚିତ୍ର୍ୟମୟ ବିଷୟଗୁଡ଼ିକ ଆଦୌ ଏକ ପ୍ରହେଳିକା ନୁହେଁ । ରାଷ୍ଟ୍ରପତିଙ୍କ ବାଲ୍ୟକାଳର ଓ ପରବର୍ତ୍ତୀ ଜୀବନର ଉପଯୁକ୍ତ ଅଧ୍ୟବସାୟ ଫଳରୁ ଏହା ସମ୍ଭବ ହୋଇ ପାରିଛି । ତାଙ୍କର ସାଧୁତା, ଯୁଗ୍ମରୂପେ କର୍ମ ସମ୍ପାଦନ ପାଇଁ ତାଙ୍କର ସ୍ଥିର ସିଦ୍ଧାନ୍ତ, ତାଙ୍କର ଶାନ୍ତି କାମନା ଏବଂ ଈଶ୍ୱର ଭକ୍ତି ଏ ସମସ୍ତ କେତେକାଂଶରେ ପୁରୁଣା ଦିନର ଆମେରିକା ବାସୀଙ୍କ କୃଷ୍ଟି ।




ଏକ ପବିତ୍ର ମୁହୂର୍ତ୍ତ ଶ୍ରୀଯୁକ୍ତ ଆଇଜେନହାୱାର ୩୪ତମ ରାଷ୍ଟ୍ରପତି ହିସାବରେ ଅଭିଷିକ୍ତ ହେଉଛନ୍ତି

# ରାଷ୍ଟ୍ରପତି ସମ୍ବନ୍ଧେ ?

"ମୁଁ ପବିତ୍ର ଭାବରେ ଶପଥ କରୁଅଛି ଯେ ମୁଁ ବିଶ୍ୱସ୍ତ ଭାବରେ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିର ଦାୟିତ୍ୱ ପାଳନ କରିବି ଏବଂ ମୋର ସାଧ୍ୟାନୁସାରେ ଯୁକ୍ତରାଷ୍ଟ୍ରର ସଂବିଧାନକୁ ସମର୍ଥନ ଓ ରକ୍ଷା କରିବି"। ସେମାନଙ୍କର ଦେଶର ଇତିହାସରେ ଏହି ପବିତ୍ର ପ୍ରାରମ୍ଭିକ ଶପଥ ପଞ୍ଚାଶଥର ଉଚ୍ଚାରିତ ହୋଇ ଅଛି; ଏହି ଶପଥ ଉଚ୍ଚାରଣ କରି ଏବଂ ସେମାନଙ୍କର ରାଷ୍ଟ୍ରପତି ହେବାର ଗୁରୁଦାୟିତ୍ୱ ସ୍ୱୀକାର କରି ଦେଶର ନାୟକ ଗଣ ମାର୍କିନ ଜନଗଣର ଅଗ୍ରଣୀର ପ୍ରତ୍ୟୟ ଦେଇଛନ୍ତି।

ଏହି ପଦର ଏକ ବ୍ୟକ୍ତି ସମ୍ପ୍ରତି ପାଇବାକ ପାଇଁ ଭାରତୀୟ ସାଧାରଣ ତନ୍ତ୍ରର ଜନ ସାଧାରଣ ଓ ସରକାରର ଆତିଥ୍ୟ ଗ୍ରହଣ କରିଥିଲେ।

ସେ ଏବଂ ତାହାଙ୍କର ପୂର୍ବବର୍ତ୍ତୀଗଣ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି ରୂପେ ସେମାନଙ୍କର କାର୍ଯ୍ୟଭାର ଗ୍ରହଣ କାଳୀନ ପବିତ୍ର ଶପଥ ବାକ୍ୟର ମାଧ୍ୟମରେ ଯେଉଁ କ୍ଷମତା ଓ ଦାୟିତ୍ୱ ଗ୍ରହଣ କରନ୍ତି, ତାହା ସାଧାରଣ ମଣିଷର ସାମର୍ଥ୍ୟ ଅପେକ୍ଷା ବହୁଗୁଣରେ ବେଶୀ।

ମାର୍କିନ ଜନଗଣ କର୍ତ୍ତୃକ ଏହି ମର୍ଯ୍ୟାଦାକୁ ଉନ୍ନୀତ ହେବାର ମୁହୂର୍ତ୍ତରୁ ରାଷ୍ଟ୍ରପତି ସେମାନଙ୍କର ଶାସନ ବ୍ୟବସ୍ଥାର ଏବଂ ସେମାନଙ୍କର ଜାତୀୟ ଓ ଅନ୍ତର୍ଜାତିକ ଜୀବନର ଶୀର୍ଷ ଦେଶରେ ଅଧିଷ୍ଠିତ ହୁଅନ୍ତି। ଏହି ଉଚ୍ଚ ପଦରେ ସେ ସେମାନଙ୍କର ସାର୍ବଭୌମତ୍ୱର ପ୍ରତୀକ ଏବଂ

ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ପରି ସେମାନଙ୍କର ଆନୁଷ୍ଠାନିକ ରାଷ୍ଟ୍ରପ୍ରଧାନ। କିନ୍ତୁ ଏକ ସାଥିରେ ସେ ପ୍ରଧାନ ମନ୍ତ୍ରୀ, କେନ୍ଦ୍ର ସରକାର ଓ ଜନ ଗଣର ପ୍ରଧାନ ପରିଚାଳକ।

ଏହି କାରଣରୁ, ବିଦେଶ ଭ୍ରମଣ କାଳରେ ବି ରାଷ୍ଟ୍ରପତି ଯୁକ୍ତରାଷ୍ଟ୍ରର ପ୍ରଧାନ ଶାସକ ଭାବରେ ସମାସୀନ ଥାଆନ୍ତି। ତାହାଙ୍କର ସରକାରୀ ବାସ ଭବନ, ହ୍ୱାଇଟ ହାଉସ, ଯେପରି ତାଙ୍କ ସାଥିରେ ଭ୍ରମଣ କରେ ; ତାହାଙ୍କର ପ୍ରତୀକ୍ଷିତ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ୱାସିଂଟନ୍‌ର ପ୍ରାସାଦଟି ସଜ୍ଜିତ କିନ୍ତୁ ଶୂନ୍ୟହିଁ ରହେ।

ଭାରତର ଅତିଥି ସମୟରେ ରାଷ୍ଟ୍ରପତି ଭବନହିଁ ତାହାଙ୍କର ଅସ୍ଥାୟୀ ହ୍ୱାଇଟ ହାଉସ ହୋଇଥିବ ଓ ସେଠାରେ ଅସ୍ଥାୟୀ-ଭାବରେ ସେ ଏକ ସାଥିରେ ତାହାଙ୍କର ଜାତିର ପ୍ରତୀକ ଓ ନେତା ରୂପେ ତାହାଙ୍କର ଭୂମିକା ଅବ୍ୟାହତ ଥିବ। ଜନ ଗଣ ଦ୍ୱାରା ପ୍ରତ୍ୟକ୍ଷ ନିର୍ବାଚନ ଫଳରେ ତାହାଙ୍କର ଦାୟିତ୍ୱ ସମ୍ବିଧାନ ଦ୍ୱାରା ଅର୍ପିତ ପ୍ରଶାସନିକ କର୍ତ୍ତୃତ୍ୱକୁ ଅତିକ୍ରମ କରେ ଏବଂ ତାହାଙ୍କୁ ଯୁକ୍ତରାଷ୍ଟ୍ରର ସର୍ବାପେକ୍ଷା କ୍ଷମତାଶାଳୀ ବ୍ୟକ୍ତିରେ ପରିଣତ କରେ।

ବ୍ୟବସ୍ଥାପକ ସଭାର ସଦସ୍ୟ ନ ହେଲେ ବି ସେ ଜାତିର ମୁଖ୍ୟ ଆଇନ ପ୍ରଣେତା; ୱାସିଂଟନରୁ ଅଧିକ ଦିନ ଅନୁପସ୍ଥିତ ରହି ନ ପାରିଲେ ମଧ୍ୟ ସେ ଦେଶର ପ୍ରଧାନ ରାଜନୀତିଜ୍ଞ, ଦେଶରକ୍ଷା ବାହିନୀର ଅଂଶ ନ ହେଲେ ମଧ୍ୟ ସେ ପ୍ରଧାନ ସୈନ୍ୟାଧ୍ୟକ୍ଷ।

ଯୁକ୍ତରାଷ୍ଟ୍ରର ସାମଗ୍ରିକ ସ୍ୱାର୍ଥ ଉଦ୍ଦେଶ୍ୟରେ ଚିନ୍ତା, ପରିକଳ୍ପନା ଏବଂ ଶାସନ କରିବାକୁ ସେ ଜନ ଗଣ ଦ୍ୱାରା ନିର୍ଦ୍ଦେଶ ପ୍ରାପ୍ତ; ତାଙ୍କ ଉପରେ ଦେଶ ବିଦେଶରେ ମାର୍କିଣ ସରକାରର କାର୍ଯ୍ୟ କାରିତା ଓ ଦକ୍ଷତା ଶକ୍ତି ନିର୍ଭର କରେ।

ରାଷ୍ଟ୍ରପତି ଆଇଜେନ ହାଓ୍ୟାର ସଙ୍ଗୀ ଆମେରିକା ବାସୀଙ୍କ ଗହଣରେ ଅତ୍ୟଧିକ ଜନପ୍ରିୟ



ଜନଗଣ ତାଙ୍କର କ୍ଷମତାର ଉତ୍ସ ବୋଲି ସେ କ୍ଷମତାରେ ଅଦ୍ୱିତୀୟ । ପ୍ରତି ଚତୁର୍ବର୍ଷ ଅନ୍ତରରେ ଜାତୀୟ ନିର୍ବାଚନରେ ମାର୍କିଣ ନାଗରିକ ଗଣ ସେମାନଙ୍କର ଭୋଟ ଦ୍ୱାରା ରାଷ୍ଟ୍ରପତି ପଦ ପାଇଁ ପ୍ରସ୍ତାବିତ ପ୍ରାର୍ଥୀମାନଙ୍କର ନାମ ଦାଖଲ କରନ୍ତି; ଭୋଟ ଦେବା ବେଳେ ବ୍ୟକ୍ତିଗତ ଭାବରେ ସେମାନେହିଁ ସେମାନଙ୍କର ଜାତୀୟ ପ୍ରତିନିଧି ମନୋନୟନ କରନ୍ତି ।

ନିର୍ବାଚନ ସଙ୍ଗେ ସଙ୍ଗେ, ରାଷ୍ଟ୍ରପତି ମାର୍କିଣ ଜନଗଣର ମୂର୍ତ୍ତି, ଇଚ୍ଛା ଶକ୍ତି ଓ ସ୍ୱାଧୀନତାର ପ୍ରତୀକ; କାର୍ଯ୍ୟଭାର ଗ୍ରହଣ ସମୟର ଶପଥ ଉଚ୍ଚାରଣ ସଙ୍ଗେ ସଙ୍ଗେ ତାହାଙ୍କର ବ୍ୟକ୍ତିସତ୍ତା ରାଷ୍ଟ୍ରପତି ସତ୍ତାରେ ଏବଂ ରାଷ୍ଟ୍ରପତି ସତ୍ତା ଜନ ସତ୍ତାରେ ବିଲୀନ ହୁଏ । ସୁତରାଂ, କାର୍ଯ୍ୟଭାରଗ୍ରହଣ କାଳୀନ ପବିତ୍ର ଶପଥ ବାକ୍ୟଟି ଯେ ୧୭୮୯ ଖ୍ରୀଷ୍ଟାବ୍ଦ ଅବଧି ରାଷ୍ଟ୍ରପତି ପଦରେ ନିର୍ବାଚିତ ୩୬ଜଣ ମାର୍କିଣ ନାଗରିକ ସମସ୍ତ ମାନସିକତା ଓ ଦୃଷ୍ଟି ଭଙ୍ଗୀକୁ ସଞ୍ଚାଳିତ କରିଅଛି, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଜଣେ ରାଷ୍ଟ୍ରପତିର ପଦ ମର୍ଯ୍ୟାଦା ଏବଂ ତାହାଙ୍କର ବ୍ୟକ୍ତିସତ୍ତା ପରସ୍ପରକୁ ରୂପାନ୍ତରିତ କରେ ।

ସେ କ୍ରମଶଃ ଜାତିର ସମସ୍ୟା ସହିତ ଘନିଷ୍ଠ ପରିଚୟ ଲାଭ କରନ୍ତି, ଜନ ସମାଜର ପ୍ରୟୋଜନୀୟତା ଏବଂ ସେମାନଙ୍କର ପୂର୍ଣ୍ଣକାତରତା ସମ୍ବନ୍ଧରେ ପ୍ରତ୍ୟୟ ଜନ୍ମେ, ନେତୃତ୍ୱର ଦାୟିତ୍ୱ ଭୂମିକାରେ ନିଷ୍ଠାପରତା ଓ ଦକ୍ଷତା ବୃଦ୍ଧି ପାଏ । ପଦ ମର୍ଯ୍ୟାଦାର ଗୁରୁ ଦାୟିତ୍ୱ ପାଳନରେ ପ୍ରତ୍ୟେକ ରାଷ୍ଟ୍ରପତିହିଁ ତାହାଙ୍କର ବିଶେଷ ନୈପୁଣ୍ୟ ଅନୁଯାୟୀ ମହତ୍ତ୍ୱର ପରିଚୟ ଦେଇଛନ୍ତି ।

ୱାସିଂଟନ, ଆଡାମସ, ଜେଫାରସନ, ମେଡିସନ ଏବଂ ମନରୋ ପରି ପ୍ରବୀଣ ରାଜନୀତିଜ୍ଞଗଣ ପ୍ରଥମ ଯୁଗରେ ଜାତିର ଭାଗ୍ୟ ନିୟନ୍ତ୍ରଣ କରିଥିଲେ । ଗୃହ ଯୁଦ୍ଧରେ ଛିନ୍ନ ବିଚ୍ଛିନ୍ନ, ଧ୍ୱଂସନ୍ମୁଖ ଯୁକ୍ତରାଷ୍ଟ୍ରରେ ଅବ୍ରାହାମ ଲିଙ୍କନଙ୍କ ପ୍ରଶ୍ନ ଧ୍ୱନିତ ହେଲା : "ଯଦି ମୋର ନିଜର ଦେଶହିଁ ନ ରହେ, ତାହା ହେଲେ ରାଷ୍ଟ୍ରପତି ପଦର ମୂଲ୍ୟ କ'ଣ ?" ସଂଘ ଏବଂ ଜାତି ଗଢ଼ଣି ସହ କରିବା ସଙ୍ଗେ ସଙ୍ଗେ ଥିଓଡୋର ରୁଜଭେଲ୍ଟ, ଫ୍ରାଙ୍କଲିନ୍ ଡି. ରୁଜଭେଲ୍ଟ ଏବଂ ଉଡ୍ରୋ ଉଇଲସନ ପରି ମନୀଷୀଗଣ ସେମାନଙ୍କର ପଦ ମର୍ଯ୍ୟାଦାର ପ୍ରଭାବ ଏବଂ ଆନ୍ତର୍ଜାତିକ ଭୂମିକା ସମ୍ବନ୍ଧରେ ସଚେତନ ହୋଇ ଉଠିଲେ ।

ବର୍ତ୍ତମାନ ଯୁଗରେ ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତିର ଗୁରୁତ୍ୱ ଅଭୂତପୂର୍ବ ବ୍ୟାପକ ଓ ଗଭୀର ।

"ମଣିଷର ବସ୍ତୁବାଦୀ ଉଦ୍ଭାବନା ପ୍ରତିଭାକୁ ଧ୍ୱଂସ କାର୍ଯ୍ୟରେ କୌଣସି କ୍ରମେ ଲଗାଇବାକୁ ଦିଆ ହେବ ନାହିଁ; ତାହାକୁ ଲଗାଇବାକୁ ହେବ ସୃଷ୍ଟିର ପବିତ୍ର କର୍ମରେ"—ଜାତିସଂଘରେ "ଶାନ୍ତି ଲାଗି ପରମାଣୁ" ଉପସ୍ଥାପିତ କରି ଏହି କଥା କହିଥିଲେ ପ୍ରେସିଡେଣ୍ଟ ଆଇଜେନହାଓ୍ୱାର, ଡିସେମ୍ବର ୧୯୫୩ ମସିହାରେ



ସଂଘୀୟ ପରିଷଦ ପ୍ରସ୍ତାବରେ ଦସ୍ତଖତ କରିବା ହେଲା ପ୍ରେସିଡେଣ୍ଟଙ୍କ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ।

ଦେଶର ବିଭାଗ କର୍ତ୍ତୃକ ଭାଷାନ୍ତରିତ ପ୍ରାଣବନ୍ତ ସାଂସ୍ଥାନିକ ଶାସନନୀତିକୁ କେନ୍ଦ୍ରକରି ଜନ ବର୍ତ୍ତମାନ ଐକ୍ୟ ରାଷ୍ଟ୍ରପତିଙ୍କୁ ନିର୍ଦ୍ଦିଷ୍ଟ ରାଜନୈତିକ ନେତୃତ୍ୱ ପ୍ରଦାନ କରନ୍ତି । ତାହାଙ୍କର ସାଂସ୍ଥାନିକ କ୍ଷମତାର ବଳରେ ଅବଶ୍ୟ ତାହାଙ୍କୁ ଏହି ନେତୃତ୍ୱ ପ୍ରୟୋଗରୁ ସଂଯତ ହେବାକୁ ହୁଏ । ଯେଉଁ ବ୍ୟବସ୍ଥାପକ ସଭାର ପ୍ରଣୀତ ଆଇନକୁ କାର୍ଯ୍ୟକରୀ କରାର ଦାୟିତ୍ୱ ତାହାଙ୍କର, ଅବଶ୍ୟ ପ୍ରୟୋଜନ କ୍ଷେତ୍ରରେ ତାହାଙ୍କୁ ସେହି ବ୍ୟବସ୍ଥାପକ ସଭା ସହିତ ସହଯୋଗୀତା କରିବାକୁ ହୁଏ । ସର୍ବୋପରି, ଜନଗଣ ଯେପରି ସେମାନଙ୍କର ଏବଂ ଦେଶର, ତଥା ବିଶ୍ୱର ପ୍ରକୃତ ସ୍ୱାର୍ଥ ସହିତ ତାହାଙ୍କୁ ପରିଚିତ କରିବାକୁ ଶିଖାଏ, ତାହାଙ୍କୁ ମଧ୍ୟ ସେହିଭଳି ସେମାନଙ୍କ ପାଇଁ ନେତୃତ୍ୱ ନେବା ଶିଖିବାକୁ ହୁଏ ।

ରାଷ୍ଟ୍ରପତି ଭୂମିକାର ସମ୍ପ୍ରସାରଣ ବୈଦେଶିକ ବ୍ୟାପାରରେ ସର୍ବାଧିକ ସ୍ପଷ୍ଟ ।

ସାମ୍ପ୍ରତିକ ଯୁଗରେ ଯୁକ୍ତରାଷ୍ଟ୍ର ଅନିଚ୍ଛା ସତ୍ତ୍ୱେ ବିଶ୍ୱର ଅନ୍ୟତମ ପ୍ରଧାନ ଶକ୍ତିରୂପେ ଆବିର୍ଭୂତ ହୋଇଛି । ବିଶ୍ୱର ଗୋଟିଏ ବୃହତ ଅଂଶର ସମର୍ଥନ ଏବଂ ନେତୃତ୍ୱର ଦାୟିତ୍ୱ ଏହା ଉପରେ ଆସି ପଡ଼ିଅଛି । କେତେକ ବର୍ଷ ପୂର୍ବରେ ଯେଉଁ ସମସ୍ତ ଜାତି ପରସ୍ପର ପାଖରୁ ବହୁ ଦୂରରେ ଥିଲେ, ଯୋଗାଯୋଗ, ଯାତାୟାତ, ପ୍ରଯୁକ୍ତି ଓ ଆଣବିକ ଶକ୍ତି ସମ୍ବନ୍ଧରେ ଯାନ୍ତ୍ରିକ ଅଗ୍ରଗତି ସେମାନଙ୍କୁ ଏକ କ୍ଷୁଦ୍ର ବିଶ୍ୱ ମଧ୍ୟରେ ଆଣି ପାରିଛି । ବିଶାଳ ମହାଦେଶ ଓ ଉପମହାଦେଶ ସମୂହ ପରସ୍ପର ସଂଯୁକ୍ତ ହୋଇଛି ।

ଜାତିପୁଞ୍ଜ ବିଶ୍ୱର ମିଳନ ସ୍ଥଳ ହୋଇ ଉଠିଛି । ବିଶ୍ୱ ଇତିହାସର ଶ୍ରେଷ୍ଠ ଜାତି ସଂଘରେ ଯୁକ୍ତରାଷ୍ଟ୍ର ଜଣେ ଅଂଶୀଦାର । "ଯଦି ଆମମାନଙ୍କର କୌଣସି ବିଶ୍ୱହିଁ ନ ରହିବ, ତେବେ ରାଷ୍ଟ୍ରପତି ପଦର ମୂଲ୍ୟ କ'ଣ ? —ଯେଉଁ ଦାୟିତ୍ୱ ବୋଧ ଜାତିସଂଘ କ୍ଷେତ୍ରରେ ରାଷ୍ଟ୍ରପତିଙ୍କୁ ଅନୁପ୍ରାଣିତ କରେ, ତାହହିଁ ତାହଙ୍କୁ ମାର୍କିଣ ଜନଗଣ କର୍ତ୍ତୃକ ଲିଙ୍କନଙ୍କର ପ୍ରଶ୍ନର ଏହି ବ୍ୟାଖ୍ୟାର ମୂଲ୍ୟବୋଧ ଦେଇଛି ।

ଏଥିପାଇଁ ପୋଟୋମାକ ନଦୀ ତୀରର ରାଷ୍ଟ୍ରପତି ଭବନ ହ୍ୱାଇଟ ହାଉସକୁ ଅତିଥିର ସମ୍ମାନ ଦେଇଥିଲା । ଲିଙ୍କନ ଯେପରି ସଂଘକୁ ଅକ୍ଷୁଣ୍ଣ ଦେଇଥିଲେ ଏବଂ ରକ୍ଷା କରିଥିଲେ, ରାଷ୍ଟ୍ରପତି ସେହିପରି ବନ୍ଧୁ-ବିଶ୍ୱର ଭିତ୍ତିକୁ ଅକ୍ଷୁଣ୍ଣ ଦେବାକୁ ଓ ରକ୍ଷା କରିବାକୁ ସଚେଷ୍ଟ । ଜନଗଣର କ୍ଷମତାଧୀନ ହୋଇ ସେ ଶାସନକାମୀ । କାର୍ଯ୍ୟଭାର ଗ୍ରହଣ ସମୟରେ ଅନ୍ତିମ ଈଶ୍ୱର ଏବଂ ସହଯାତ୍ରୀ ୧୮୦,୦୦୦,୦୦୦ ଆମେରିକା ବାସୀର ଆଶିଷ ତାହାଙ୍କୁ ପଥ ଦେଖାଏ ।

ଯୁକ୍ତରାଷ୍ଟ୍ରର ରାଷ୍ଟ୍ରପତି କୌଣସି ବିଶେଷ ବ୍ୟକ୍ତି ନୁହନ୍ତି । ଯେଉଁ ୧୮୦,୦୦୦,୦୦୦ ଆମେରିକା ବାସୀର ବ୍ୟକ୍ତିଗତ ଆଶା ଏବଂ ସମସ୍ତ ଜାତିର ସମସ୍ତ ଜନସମାଜ ସହିତ ସ୍ୱାଧୀନତା, ଚିରସ୍ଥାୟୀ ଶାନ୍ତି ଓ ବନ୍ଧୁତ୍ୱର ଆଶା ପୂର୍ଣ୍ଣ କରିବାକୁ ସେ ପ୍ରୟାସୀ, ସେହି ୧୮୦,୦୦୦,୦୦୦ ଆମେରିକା ବାସୀ ତାହାଙ୍କ ହାତରେ ସମର୍ପିତ ।

ପ୍ରତ୍ୟେକ ଆମେରିକା ବାସୀ ତାହାଙ୍କର ଅଂଶ । ବିଶ୍ୱର ଜାତି ଏବଂ ଜନଗଣ ପ୍ରତି ତାହାଙ୍କ ସହିତ ଏକ ସାଥିରେ ୧୮୦,୦୦୦,୦୦୦ ଆମେରିକା ବାସୀର ଶୁଭେଚ୍ଛା ଓ ସହଯୋଗିତାର ଦକ୍ଷିଣ ହସ୍ତ ପ୍ରସାରିତ ହୁଏ । ତାରପରେ ଯେତେବେଳେ ତାହାଙ୍କ ପ୍ରତିଶ୍ରୁତି ଆନ୍ତରିକତା ସହିତ ଅସଂଖ୍ୟଥର ମାଲ୍ୟ-ଭୂଷିତ କରା ଯାଇଥିବ, ସେତେବେଳେ ଆମେରିକା ବାସୀର ହୃଦୟ ମୈତ୍ରୀ ଦେଇ ଅନିର୍ବଚନୀୟ କୃତଜ୍ଞତାରେ ପରିପୂର୍ଣ୍ଣ ହୋଇଥିବ । ଯେତେବେଳେ ତାହାଙ୍କର ଲକ୍ଷ୍ୟ ଜୟଗାନରେ ଚର୍ଚ୍ଚିତ ହେବ, ତାହା ୧୮୦,୦୦୦,୦୦୦ ଆମେରିକା ବାସୀଙ୍କୁ ସମ୍ମାନିତ କରିଛି ।

ଯୁକ୍ତରାଷ୍ଟ୍ର ର ରାଷ୍ଟ୍ରପତିର ମର୍ଯ୍ୟାଦା ଭାରତ ସ୍ୱତନ୍ତ୍ର ଭାବରେ ପ୍ରତୀୟମାନ କରିଛି । ତାହାଙ୍କ ପ୍ରତି ଉତ୍ସର୍ଗିତ ଆନ୍ତରିକତା, ଦୁର୍ନିବାର ଚିନ୍ତାଧାରା ଓ ବନ୍ଧୁତ୍ୱର ସ୍ୱୀକୃତି, ଭବିଷ୍ୟତର ମାର୍କିଣ ରାଷ୍ଟ୍ରପତି ମାନଙ୍କୁ ଆଶ୍ୱାସ ଓ ଶକ୍ତି ଦେବ । ଯେତେବେଳେ ସେମାନେ ସେମାନଙ୍କର ଜନଗଣର ଆହ୍ୱାନରେ ଅଗ୍ରସର ହୋଇ ଆମେରିକା ଓ ବିଶ୍ୱର ସ୍ୱାଧୀନତା ଭିତ୍ତିକ ଶାନ୍ତି ଓ ବନ୍ଧୁତ୍ୱର ପ୍ରତି ସେମାନଙ୍କର ଜୀବନ, ଭାଗ୍ୟ ଓ ପବିତ୍ର ସମ୍ମାନ ଉତ୍ସର୍ଗ କରିବେ, ସେତେବେଳେ ଏହିସବୁ ସ୍ମରଣ କରି ସେମାନେ ଅନୁପ୍ରାଣିତ ହେବେ ।

# ଶାନ୍ତି ଲାଗି ତୀର୍ଥଯାତ୍ରା



ଡିସେମ୍ବର ୩, ଗୁରୁବାର ସଞ୍ଜ ୫ଟା। ଲକ୍ଷ ଲକ୍ଷ ଆମେରିକା ବାସୀ ସେମାନଙ୍କର ଟେଲିଭିଜନରୁ ଅପେକ୍ଷା କରିଥାନ୍ତି ଯେତେବେଳେ ପ୍ରେସିଡେଣ୍ଟ ତାଙ୍କର ଓ୍ୱାଶିଂଟନ ସ୍ଥିତ ହ୍ୱାଇଟ ହାଉସରୁ ସେମାନଙ୍କ ଉଦ୍ଦେଶ୍ୟରେ କହିଲେ।

“ଆଉ ଅଳ୍ପ ସମୟ ପରେ ମୁଁ ତିନି ସପ୍ତାହ ବ୍ୟାପୀ ଅର୍ଦ୍ଧ ପୃଥିବୀ ସଫର ଉଦ୍ଦେଶ୍ୟରେ ବାହାରିବି। ଏହାରି ଫଳରେ ଆମେରିକା ବାସୀଙ୍କ ଶୁଭକାମନା ଅଧିକ ଭାବରେ ବର୍ଦ୍ଧିତ କରିବ ଏବଂ ସଙ୍ଗେ ସଙ୍ଗେ ଆମ ବନ୍ଧୁମାନଙ୍କ ନିକଟରୁ ଅଧିକ ତଥ୍ୟ ଜାଣିବି। ଆମେରିକା ବାସୀଙ୍କର ଗଭୀର ପ୍ରୟାସ—ଅବାଧିତ ଓ ଯଥାର୍ଥ ଭାବରେ ପୃଥିବୀରେ ସମସ୍ତ ଜାତି ସ୍ୱାଧୀନତା, ନ୍ୟାୟପରତା ଓ ଶାନ୍ତିରେ ଯେପରି ଉନ୍ନତ ଓ ସମୃଦ୍ଧିଶାଳୀ ହୋଇ ପାରିବେ, ଏହା ଜଣାଇବା ହିଁ ମୋର ସଫରର ଉଦ୍ଦେଶ୍ୟ”।

ଛ'ଦିନ ଓ ୧୬,୦୦୦ ମାଇଲ ପରେ, ଯୁକ୍ତରାଷ୍ଟ୍ର ବିମାନ ବାହିନୀର ୧୮ ଖଣ୍ଡି ଫାଇଟର ଜେଟ ବିମାନ ଘେରି ରହିଥିବା ବୋଇଙ୍ଗ ୭୦୭ ଜେଟ ବିମାନକୁ ପାଲମ ବିମାନ ବନ୍ଦରକୁ ଅଣେଇ ନେଇ ଆସେ ସେଥିରେ ଥିଲେ ରାଷ୍ଟ୍ରପତି ଏବଂ ସରକାରୀ ଦପ୍ତରର କର୍ମଚାରୀ ବୃନ୍ଦ। ଓ୍ୱାଶିଂଟନ ଛାଡ଼ିବା ପରେ ସେ ଇଟାଲି, ତୁର୍କୀ, ପାକିସ୍ଥାନ ଓ ଆଫଗାନିସ୍ଥାନ ପରିଦର୍ଶନ କରିଥିଲେ।







ସେହି ସର୍ବ ସଫଳ କେଡ଼ି କେବଳ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ କରୁ ନ ଥିଲେ, ଶ୍ରୀଯୁକ୍ତ ଆଇଜେନହାୱାର ୧୯ ଦିନରେ ୨୨,୩୭୦ ମାଇଲ ଅତିକ୍ରମ କରୁ ତିନୋଟି ମହାଦେଶର ୧୧ଟି ଦେଶ ପରିଦର୍ଶନ କରିଥିଲେ। ଜେଟ ବିମାନ ଯୋଗେ ୧୯,୬୦୦, ହେଲିକପ୍ଟର ସାହାଯ୍ୟରେ ୨୭୦, ଜାହାଜ ଯୋଗେ ୧୫୦୦ ଏବ ରେଳ ଓ ମୋଟର ଯୋଗେ ୧,୦୦୦ ମାଇଲ ଭ୍ରମଣ କରିଥିଲେ। ସେହି ବୋଇଙ୍ଗ ଜେଟ ବିମାନଟି ସେ ବ୍ୟବହାର କରନ୍ତି ତାହା ସମୁଦ୍ର ପତ୍ତନ ଠାରୁ ୫ମାଇଲ ଉପରେ ରହି ଘଣ୍ଟା ପ୍ରତି ୬୫୦ ମାଇଲ ବେଗରେ ଗତି କରେ।





ପ୍ରେସିଡେଣ୍ଟଙ୍କ ଆଗମନ ସମୟରେ ନୂଆଦିଲ୍ଲୀ ଗୋଟିଏ ବଡ଼ ବିବାହ ମଣ୍ଡପ ଭଳି ଦେଖା ଯାଉଥିଲା । ସପ୍ତାହବ୍ୟାପୀ ଉତ୍ସବ ଆୟୋଜନର ବ୍ୟବସ୍ଥା ସଭି ଅସଂଖ୍ୟ ଲୋକ ନିଯୋଜିତ ଥିଲେ । ବୈଦ୍ୟୁତିକ ଖୁଣ୍ଟି ଗୁଡ଼ିକୁ ନୂଆକରି ସାଦାରଙ୍ଗ ଲଗା ହେଲା । ଗ୍ରାମୋଦ୍ୟୋଗ ଭବନର ବାଳିକାମାନେ ଦିନରାତି ଖଟି ୪୦,୦୦୦ ବର୍ଗଗଜ ଖଦି ଲୁଗାରୁ ୧୫,୦୦୦ ତ୍ରିବର୍ଣ୍ଣ ରଞ୍ଜିତ ଭାରତୀୟ ଏବଂ (ଯୁକ୍ତରାଷ୍ଟ୍ରର) ତାରକା ଓ ପଟ୍ଟାଦାର ରଞ୍ଜିତ ପତାକା କରିଥିଲେ । ଜନୈକ ପ୍ରେସକୁ ରାତିରେ ଅଷ୍ଟୁଙ୍କ ଗୁଜନ କରି ତୋଳିବା ପାଇଁ ନୂଆଦିଲ୍ଲୀ ବଣିକ ସଂଘ ଦଶହଜାର ବଲ୍ବ ଉପର ବକୁଳ ବତି ଓ ଶହେ ଫୁଟ ଲମ୍ବ "ନିୟନ ଟ୍ୟୁବ ଆଣିଥିଲେ । ରାସ୍ତା ପାଖରେ ଠିଆ ହୋଇଥିବା ପ୍ରାୟ କୋଡ଼ିଏଟି ତୋରଣକୁ ଫୁଲରେ ସଜାଇବା ପାଇଁ ବିଭିନ୍ନ ସ୍ଥାନରୁ ତଜା ଭଉ ଫୁଲ ରେଲ ଷ୍ଟେସନରେ ଆସି ପହଞ୍ଚିଥିଲା । ଉରସୁଲିନ ରୋଡର ଦୋକାନୀମାନେ ଗୋଟିଏ ସ୍ୱାଗତ ତୋରଣକୁ ପୂରା ପ୍ରକୃତ ଫଳ ଦ୍ୱାରା ତିଆରି କରିଥିଲେ —— ଏଥିରେ ଥିଲା କଦଳୀ, କମଳାଲେମ୍ବୁ, ଅତ ଓ ଡାଲିମ୍ବ

ବୁଧବାର, ଡିସେମ୍ବର ୯ ତାରିଖ । ଅନ୍ୟ ଦିନର ଶୀତୁଆ ଓପର ଓଳି ଭଳି ସେଦିନ ଦିଲ୍ଲୀର ଓପର ଓଳି ବି ଥିଲା ଏକ ଶୀତଳ । ପରିଷ୍କାର ନୀଳନଭ ଆବୃତ ହୋଇଥିଲା ପତଳା ମେଘ ମାଳାରେ । ତେବେ ବି ବାୟୁ ମଣ୍ଡଳରେ ଯେଉଁ ଅସାଧାରଣ ପରିଲକ୍ଷିତ ହେଉଥିଲା, ସେଥିରେ ଥିଲା ଉତ୍ସାହ । ସହର ପଥ ଓ ରାସ୍ତାର ଶୂର୍ଣ୍ଣିରେ ଶୋଭା ପାଉଥିଲା ଅଗଣିତ ପତାକା ମାଳା ।

ସେଦିନ ଅନ୍ୟଦିନ ଭଳି ଥିଲେ ବି ପ୍ରଭେଦ ଥିଲା । ପାଲମ ବିମାନ ବନ୍ଦରଠାରୁ ରାଷ୍ଟ୍ରପତି ଭବନ ପର୍ଯ୍ୟନ୍ତ ୧୩ ମାଇଲ ଦୀର୍ଘ ପଥ ଶତ ସହସ୍ରାଧିକ ଲୋକରେ ଜନାକୀର୍ଣ୍ଣ ହୋଇ ଉଠିଥିଲା । ପୁଷ୍ପ ତୋରଣରେ "ଆଇଜେନ ହାୱାର ଶାନ୍ତିର ରାଜକୁମାର" ଲେଖି ସ୍ୱାଗତ ଜଣାଇବା ପାଇଁ ଉତ୍ସୁକ ଥିଲେ ସମସ୍ତେ ।

ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦ ଓ ପ୍ରଧାନ ମନ୍ତ୍ରୀ ନେହେରୁଙ୍କୁ ସମ୍ଭାଷଣ ଜଣାଇ ରାଷ୍ଟ୍ରପତି ଆଇଜେନହାୱାର କହିଲେ "ଭାରତ ଭୂମିରେ ପଦାର୍ପଣ କରିବା ସଙ୍ଗେ ସଙ୍ଗେ ମୋର ବହୁଦିନର ଗୋଟିଏ ଆଶା ପୂର୍ଣ୍ଣ ହେଲା"...... । "ମାତ୍ର ଶୁଭ ଅଭିନନ୍ଦନରେ ବ୍ୟକ୍ତିଗତ ଭାବରେ ଭାରତ ଆମେରିକାର ଯେତେଦୂର ସମ୍ଭବ ତାହା କରିବା ପାଇଁ ମୁଁ ଏଠାକୁ ଆସିଛି" ।

ଶ୍ରୀଯୁକ୍ତ ଆଇଜେନ ହାୱାରଙ୍କୁ ସ୍ୱାଗତ ଜଣାଇ ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦ ସ୍ପଷ୍ଟ ଆଶାନେଇ ପ୍ରାର୍ଥନା କରିଥିଲେ "ଜଣେ ସୁଯୋଗ୍ୟ ସୈନିକ ବର୍ତ୍ତମାନ ଜଣେ ମହାନ ରାଜନୀତିଜ୍ଞ ହୋଇ ଶାନ୍ତିର ସନ୍ଧାନରେ ବିଶ୍ୱ ପରିଭ୍ରମଣ କରି ବୁଲୁଛନ୍ତି" । ତାଙ୍କର ଏହି ଶାନ୍ତିର ପ୍ରଚେଷ୍ଟା ଯେପରି ସଫଳ ହୁଏ ।

ରାସ୍ତାଯାକ ପୁଷ୍ପ ବୃଷ୍ଟି ହେଉଥାଏ । ଭାରତୀୟ ଜନଗଣ ଶ୍ରୀଯୁକ୍ତ ଆଇଜେନ ହାୱାରଙ୍କୁ ପୁଷ୍ପିଳ ମାଳିକ ଶ୍ରଦ୍ଧାରେ ସମ୍ମାନିତ କରିଥିଲେ





ଲକ୍ଷ ଲକ୍ଷ ଲୋକର ଭିଡ଼ା ଭିଡ଼ି ଓ ପତାକାରେ ଯେଉଁ ଧରଣର ଦୃଶ୍ୟ ସୃଷ୍ଟି ହେବ ତାହା ଅନୁମିତ ଭାରତ ଭୂମିକୁ ମୁକ୍ତ କରି ଦେବ । ଏକ ନୀଳବର୍ଣ୍ଣ କେଡ଼ିଲାକ ଗାଡ଼ିରେ ଦୁଇ ପ୍ରେସିଡେଣ୍ଟ ଓ ପ୍ରଧାନ ମନ୍ତ୍ରୀ ନେହେରୁ ବିମାନ ବନ୍ଦରରୁ ବାହାରି ଆସିଲେ । ତାହାପରେ ଦେଖାଦେଲା ଏକ ଉଦ୍ଦାମ ଉତ୍ତେଜନା ଯାହା ଇତିହାସରେ ବିରଳ । ଉତ୍ଫୁଲ୍ଲ ଜନତା ରାଷ୍ଟ୍ରପତିଙ୍କ ଗାଡ଼ିକୁ ଘେରିଗଲେ । ଏକ ମାଇଲ ଦୂରରୁ ଶୁଣାଯାଉ ଥାଏ ଜନତାର କଣ୍ଠୋଳ ଧ୍ୱନି "ଆଇଜେନ ହାଓ୍ୱାର ଦୀର୍ଘଜୀବୀ ହୁଅନ୍ତୁ" ଓ "ଆଇଜେନ ହାଓ୍ୱାରଙ୍କ ଜୟ" । ସହସ୍ର ସହସ୍ର ଲୋକ ଆଇଜେନ ହାଓ୍ୱାରଙ୍କୁ ପୁଷ୍ପ ବୃଷ୍ଟି କରି ସ୍ୱାଗତ ଜଣାଉଥିଲେ । ଚଳନ୍ତ ମୋଟର ଗାଡ଼ିକୁ ଲକ୍ଷ୍ୟ କରି ଅଗଣିତ ଫୁଲହାର ପଥପାଶରୁ ରାସ୍ତା ଉପରକୁ ଧାଇଁ ଆସି ଅଧିକାଂଶ ସ୍ଥାନରେ ରାଷ୍ଟ୍ରପତିଙ୍କ ମୋଟର ଗାଡ଼ିକୁ ଅଟକାଇ ଦେଉଥାଏ । ପୋଲିସ ଥିଲା ହତବାକ୍ । ଅଦ୍ଭୁତ ଦୃଶ୍ୟ ପ୍ରଭାବିତ ହୋଇ ଆସିଲେ କେଡ଼ିଲାକ ଆଡ଼କୁ, ରାଷ୍ଟ୍ରପତିଙ୍କ ସ୍ପର୍ଶ ଲାଗି ।

ଯେତେବେଳେ ରାଷ୍ଟ୍ରପତି ହସ ମୁହଁରେ ଛିଡ଼ାହୋଇ ହସ୍ତ ସଞ୍ଚାଳନ କରି ଜନତାର ପ୍ରତି ଅଭିନନ୍ଦନର ଉତ୍ତର ଦେଉଥାନ୍ତି, ପ୍ରଧାନ ମନ୍ତ୍ରୀ ନେହେରୁ ଉଦ୍‌ଦୃପ୍ତ ଜନତାକୁ ରାସ୍ତାରୁ ସରିଯିବାକୁ ଅନୁରୋଧ କରନ୍ତି । ମଝିରେ ମଝିରେ ତାଙ୍କ ଗାଡ଼ିରେ ଆସି ପଡୁଥିବା କର୍ଣ୍ଣେସନ୍ ଫୁଲମାଳ ଗୁଡ଼ିକୁ ସେ ଜନତା ଭିତରକୁ ପ୍ରତି-ନିକ୍ଷେପ କରୁଥାନ୍ତି । ମୋଟର ସାଇକେଲ ଆରୋହୀ ରକ୍ଷୀ ରାସ୍ତା ପରିଷ୍କାର କରିବାରେ ଚେଷ୍ଟା କରୁଥାନ୍ତି, ମାତ୍ର ସେମାନେ ବିଫଳ ହେଉଥାନ୍ତି । ଶେଷରେ ଅଶ୍ୱାରୋହୀ ପୁଲିସ ଆସି ମୋଟର ସାଇକେଲ ଆରୋହୀ ପୁଲିସର ସ୍ଥାନ ଗ୍ରହଣ କରେ ଏବଂ ଜନ ସମୁଦ୍ର ଭିତର ଦେଇ ଶୋଭାଯାତ୍ରା ଧୀରେ ଧୀରେ ଅଗ୍ରସର ହୁଏ ।

ଶୋଭାଯାତ୍ରା କନ୍‌ଟ ପ୍ଲେସରେ ପହଞ୍ଚିଲେ ଜନତାର ଉତ୍ସାହ ଶେଷ ସୀମା ସ୍ପର୍ଶ କରେ । ଉଦ୍‌ବେଳିତ ଜନ ସମୁଦ୍ର ମଝିରେ କ୍ୟାଡ଼ିଲକ ଅଟକି ଯାଏ । ଦର୍ଶନପିପାସୁ ଜନତା ଯେତେବେଳେ ରାଷ୍ଟ୍ରପତି ଆଇଜେନ ହାଓ୍ୱାରଙ୍କ ସହିତ କରମର୍ଦ୍ଦନ ଉଦ୍ଦେଶ୍ୟରେ ଗାଡ଼ି ଆଡ଼କୁ ଧାଇଁ ଆସିଲେ ପ୍ରଧାନ ମନ୍ତ୍ରୀ ନେହେରୁ ପ୍ରେସିଡେଣ୍ଟଙ୍କ ଗାଡ଼ିରୁ ଓହ୍ଲାଇ ମିଲିଟାରି ପୋଲିସର ଗାଡ଼ିଏ ଉପରେ ଆରୋହଣ କଲେ ଓ ପ୍ରେସିଡେଣ୍ଟଙ୍କ ମୋଟର ପଥ କରିଦେବା ପାଇଁ ଜନତାକୁ ଅନୁରୋଧ କଲେ । ସେତେବେଳେ ସିନା ସେମାନଙ୍କର ମହାନ ନେତାଙ୍କ ଅନୁରୋଧ ଶୁଣିବାରୁ ଜନତା କ୍ୟାଡ଼ିଲକ୍‌କୁ ଆଗେଇ ବାକୁ ଦେଏ ।

“ଆଜି ପର୍ଯ୍ୟନ୍ତ କୌଣସି ଦର୍ଶକଙ୍କୁ ଏପରି ଅପରିସୀମ ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ବର୍ଦ୍ଧନା ଦିଆ ହୋଇ ନାହିଁ” ଲେଖିଥିଲେ ଟାଇମସ୍ ଅଫ୍ ଇଣ୍ଡିଆ ।

ତେର ମାଇଲ ପଥ ୧୩୪ ମିନିଟରେ ଅତିକ୍ରମ କରି ଯେତେବେଳେ କ୍ୟାଡ଼ିଲକ ରାଷ୍ଟ୍ରପତି ଭବନର ଲୌହ ଗେଟ ପାଖରେ ପହଞ୍ଚେ ସେତେବେଳେ ସନ୍ଧ୍ୟା ଘନେଇ ଆସିଥିଲା । ଦକ୍ଷିଣ ଗେଟ ନିକଟରେ ଗାଡ଼ୀ ପହଞ୍ଚିବା କ୍ଷଣି ବ୍ରାହ୍ମଣ ବେଦ ମନ୍ତ୍ର ଉଚ୍ଚାରଣ କଲେ । ତଥା ଭାରତ ସମ୍ବର୍ଦ୍ଧନା ପାଇଁ ଆସେଇ ଆସିଥିଲେ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ନାତୁଣୀ ଥାଳରେ ଧରି ଦୁଇଟି ଘୃତ ପ୍ରଦୀପ, ଆରତି ପାଇଁ । ଏହି ସମ୍ବର୍ଦ୍ଧନା କେହି କେବେ, ବିଶେଷତଃ ରାଷ୍ଟ୍ରପତି ଆଇଜେନ ହାଓ୍ୱାର ଭୁଲି ପାରିବେ ନାହିଁ ।

ପରଦିନ ଶୀତୁଆ ପ୍ରତ୍ୟୁଷରେ ଦର୍ଶନାଭିଳାଷୀ ବିଶାଳ ଜନତା-ମଧ୍ୟରେ ଥିଲେ ପେରାମ୍ବୁଲେଟର ଠେଲି ଠେଲି ଆସିଥିବା ଜନନୀ; ବହି ହାତରେ ଛାତ୍ର ଓ ଫାଇଲ ହାତରେ କିରାଣୀ । ଧୂପ, ଚନ୍ଦନ ଓ ପୁଷ୍ପଗୁଚ୍ଛ ବାରବାର ସହିତ ରାଜଘାଟ ସମାଧିରେ ସବୁଜ ପାଖୁଡ଼ା ପାଟଳ ଓ ନାଲି ବର୍ଣ୍ଣ ମିଶ୍ରିତ ଗୋଲାପ ଫୁଲର ମାଲ୍ୟ ଅର୍ପଣ କରିବାରେ ଶ୍ରଦ୍ଧେୟ ଆଇଜେନ ହାଓ୍ୱାରଙ୍କୁ ଲକ୍ଷ୍ୟ କରୁଥିଲେ । ଧର୍ମନିଷ୍ଠାରେ ପ୍ରତିପାଳିତ ଆଇଜେନ ହାଓ୍ୱାର (ସେ ତାଙ୍କର ସାପ୍ତାହିକ ମନ୍ତ୍ରୀମଣ୍ଡଳ ବୈଠକ ସଂକ୍ଷିପ୍ତ ପ୍ରାର୍ଥନାରେ ଆରମ୍ଭ କରନ୍ତି) ସମାଧି

ପ୍ରେସିଡେଣ୍ଟ ଆଇଜେନହାଓ୍ୱାରଙ୍କ ପ୍ରଥମ କର୍ମସୂଚୀ: ମହାତ୍ମା ସମାଧି ଉପରେ ମାଲ୍ୟ ଅର୍ପଣ, ଓ ସେଠାରେ ବୃକ୍ଷ ଚାରା ରୋପଣ ।





ଶିଶୁମାନଙ୍କ ପ୍ରତି ସ୍ନେହଦୃଷ୍ଟି ଦେଉଛନ୍ତି ଭାରତ ଓ ଆମେରିକାର ମହାନ ନେତାଙ୍କ ମଧ୍ୟରେ ଗୋଟିଏ ମୌଳିକ ବନ୍ଧନ। ଦୁଇ ସମାଜ ଲାଗି ଗୋଟିଏ ସୁଖୀ ଦୁନିଆ ଗଢ଼ି ତୋଳିବା ପାଇଁ ପ୍ରେସିଡେଣ୍ଟ ଆଇଜେନହାୱାର ଶାନ୍ତି ତୀର୍ଥ-ଯାତ୍ରା ଲାଗି ବାହାରିଥିଲେ।



ଉପରେ ହିନ୍ଦୀ ଓ ନାଗରି ସେଣ୍ଟ୍ ଫୁଲ ପାଖୁଡ଼ାରେ ଲେଖା ହୋଇଥିବା "ହେ ରାମ" ର ଅର୍ଥ ପଚାରି ବୁଝିଥିଲେ। ଏହାଥିଲା ମୃତ୍ୟୁ ପୂର୍ବରେ ଉଚ୍ଚାରଣ ଗାନ୍ଧୀଙ୍କର ଅନ୍ତିମ ଭାଷା।

ଧୀରେ ଧୀରେ ବୁଲୁଡ଼ି ଆଇକେ ସବୁ ଉଦ୍ୟାନ ମାଳ ପୂର୍ଣ୍ଣ ଚରଣରେ ଟହଲମହଲ ହୋଇ ଉଠିଲ ଶିଶିର ସିକ୍ତ ରାଜଘାଟର ସବୁଜ ଘାସର ଶଯ୍ୟା। ସମାଧିର ପୂର୍ବ ପଟକୁ ଲଗା ମନୋରମ ଉଦ୍ୟାନରେ ରୋପଣ କଲେ ରାଷ୍ଟ୍ରପତି ୨ଫୁଟ ଲମ୍ବ ଏକ ଶ୍ୱେତ ଚମ୍ପକ ଗଛ। ଏହା ଚିର ସବୁଜ। ଏଥିରେ ବୃହଦାକାର ଶ୍ୱେତ ସୁରଭି ପୁଷ୍ପ ଫୁଟେ।

ଶୁକ୍ରବାର ଦିନ ରାଷ୍ଟ୍ରପତି ଶ୍ରୀଯୁକ୍ତ ନେହେରୁଙ୍କ ସହିତ ଦୁଇଘଣ୍ଟା ସଭା ପରେ ଅନେକ ଗୁଡ଼ିଏ ବ୍ୟକ୍ତିଗତ ଆଲୋଚନା ଆରମ୍ଭ କଲେ। ଭାରତର ମହାନ ନେତାଙ୍କ ସହିତ ଏକ ବନ୍ଧୁତ୍ୱ ବସି ରାଷ୍ଟ୍ରପତିଙ୍କ ଭାରତ ସଫରରେ ଆସିବାର ମୁଖ୍ୟ ଉଦ୍ଦେଶ୍ୟ। ଏଗାରଗୋଟି ରାଷ୍ଟ୍ରରେ ସେ ଯେଉଁ କେତେଦିନ ଅବସ୍ଥାନ କରିଥିଲେ ତା ଅପେକ୍ଷା ସେ ଭାରତରେ ବେଶି ଦିନ କଟାଇ ଥିଲେ। ପ୍ରଧାନ ମନ୍ତ୍ରୀଙ୍କ ବାସ ଭବନରେ ରାଷ୍ଟ୍ରପତି ଆଇଜେନ ହାୱାରଙ୍କ ସମ୍ବର୍ଦ୍ଧନା ପରି ନେହେରୁଙ୍କ ଦ୍ୱାରା ଆୟୋଜିତ ମଧ୍ୟାହ୍ନ ଭୋଜନକୁ ମୋଟରରେ ଯୋଗେ ଆସିବା ଆଗରୁ ପ୍ରେସିଡେଣ୍ଟ ଓ ଶ୍ରୀଯୁକ୍ତ ନେହେରୁ ରାଷ୍ଟ୍ରପତି ଭବନରେ ଚେତ ସଭା କଥା-ବାର୍ତ୍ତା ହୋଇଥିଲେ।

ପାଞ୍ଚଟା ବାଜିବାର କେତେକ ମିନଟ ପୂର୍ବରୁ ପ୍ରେସିଡେଣ୍ଟ ମୋଟର ଯୋଗେ ଭାରତୀୟ ସଂସଦକୁ ଯିବା ବାଟରେ ଲକ୍ଷ ଲକ୍ଷ ନରନାରୀ ଉଲ୍ଲାସ ଧ୍ୱନି ଦେଇ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ। ପ୍ରେସିଡେଣ୍ଟ ଆଇଜେନ ହାୱାରଙ୍କୁ "ଲକ୍ଷ ଲକ୍ଷ ଲୋକ ସ୍ୱାଧୀନତା, ଶାନ୍ତି ଓ ଗଣତନ୍ତ୍ରର ପ୍ରତୀକ ବୋଲି ମନେ କରେ" କହି ସମ୍ବର୍ଦ୍ଧନା ଜଣାଇଲେ ଭାରତର ଉପ-ରାଷ୍ଟ୍ରପତି, ଡଃ ଏସ, ରାଧାକୃଷ୍ଣନନ୍। ସେ କହିଲେ "ସେଥିପାଇଁ ବର୍ତ୍ତମାନ ଅନ୍ତର୍ଜାତିକ ଝଗଡ଼ା ହ୍ରାସ ଏବଂ ଶାନ୍ତି ସ୍ଥାୟୀ କରଣ ପାଇଁ ଆପଣ ଯଥାସାଧ୍ୟ ଚେଷ୍ଟା କରୁଛନ୍ତି...

ମୁଁ ଆପଣମାନଙ୍କ ସମ୍ମୁଖରେ ଭାଷଣ ପ୍ରଦାନର ଆମନ୍ତ୍ରଣ ପାଇଁ ନିଜକୁ ଅତ୍ୟନ୍ତ ଗୌରବାନ୍ୱିତ ବୋଧ କରୁଅଛି। ବ୍ୟକ୍ତିଗତ ସମ୍ମାନ ଛଡ଼ା ଏହି ଆମନ୍ତ୍ରଣ ଆପଣ ମାନେ ଓ ମୁଁ ଯେଉଁ ଦୁଇ ଜାତିର ପ୍ରତିନିଧିତ୍ୱ କରୁଅଛୁ, ସେହି ଦୁଇ ଜାତି ମଧ୍ୟରେ ଗଭୀର ବନ୍ଧୁତ୍ୱର ଏକ ଉଜ୍ଜ୍ୱଳ ନିଦର୍ଶନ।

ମୁଁ ମୋର ଜାତିର ନିକଟରୁ ଏହି ଦେଶର ସତର କୋଟି ଅଧିବାସୀ ନିକଟକୁ ଏହି ବାଣୀ ବହନ କରି ଆଣିଛି ଯେ, ସେମାନେ ଭାରତର ମଙ୍ଗଳ ସହିତ ଆମେରିକାର ମଙ୍ଗଳ ଏକ ସୂତ୍ରରେ ଗ୍ରଥିତ ବୋଲି ମନେ କରନ୍ତି। ଆମେରିକା ମଧ୍ୟ ଭାରତ ପରି ସ୍ୱାଧୀନ ଭାବରେ, ଆତ୍ମ ମର୍ଯ୍ୟାଦା ଓ ସ୍ୱାଧୀନତାର ପୂର୍ଣ୍ଣ ଶାନ୍ତିର ସହିତ ବାସ କରିବାର ଆକାଂକ୍ଷା ପୋଷଣ କରେ।

ସମ୍ପ୍ରତି ବିଜ୍ଞାନୀ ମାନଙ୍କର ଚମକପ୍ରଦ କୃତିତ୍ୱ ମାନବଜାତିର ସମ୍ମୁଖରେ ଏହି ପ୍ରକାର ଜୀବନ ଯାତ୍ରାର ଏକ ଅଭୂତପୂର୍ବ ସୁଯୋଗ ଆଣି ଦେଉଛି। ବିଜ୍ଞାନ କେଉଁ ଉଦ୍ଦେଶ୍ୟରେ ବ୍ୟବହୃତ ହେବ, ଏହି ପ୍ରଶ୍ନ ଆଜି ଆମମାନଙ୍କ ସମ୍ମୁଖରେ ଉପସ୍ଥିତ।

ସମ୍ମୁଖରେ ଦୀର୍ଘ ପଥ-ସେପଥ ଦେଇ ନବଯୁଗର ଆଡ଼କୁ ପଦକ୍ଷେପ କରୁଛି। ଯେତେଦିନ ଯାଉ ଅଛି ପୃଥିବୀ ସେତେ ସମ୍ପଦଶାଳୀ ହୋଇ ଉଠୁଅଛି... ପ୍ରାକୃତିକ ସମ୍ପଦ ଉପରେ ତାହାର ଅନେକ ଅଧିକାର ପ୍ରତିଷ୍ଠିତ ହୋଇ ଅଛି। ଜଣକର କଲ୍ୟାଣ ସର୍ବଜନର କଲ୍ୟାଣ ରୂପେ ଦେଖା ଦେଉଛି। ଜାତି ଜାତି, ବ୍ୟବସାୟ ବାଣିଜ୍ୟ ସମ୍ପର୍କରେ ଏହି କଥାହିଁ ସତ୍ୟ ହୋଇ ଉଠିଅଛି।

କିନ୍ତୁ ସର୍ବାଧିକ କରୁଣ ଓ ମର୍ମନ୍ତୁଦ କାହାଣୀ ମଧ୍ୟ ରହିଛି। ଅବିଶ୍ୱାସ ଓ ମିଥ୍ୟାଗ୍ରହ ଏହି ପୃଥିବୀକୁ ଥରକୁ ଥର ବହ୍ନି ଓ ବିଦ୍ଧ୍ୱସ୍ତ କରି ଦେଉଛି। ଏହି ପୃଥିବୀର ଶ୍ୟାମଳ ଶସ୍ୟକ୍ଷେତ୍ର ଉପରେ ଦେଇ ରକ୍ତ ସ୍ରୋତ ବୋହି ଯାଉଛି, ସମରାସ୍ତ୍ର ଥରକୁ ଥର ଏହି



ଅମ୍ଭେ ଅଣାବନ୍ତି, ଅମ୍ଭେମାନେ ଏକ ନବଯୁଗ ଆଡ଼କୁ ଅଗ୍ରସର ହେଉଅଛୁ । ମୋ ତରଫରୁ ମୁଁ କହିପାରେ, ଶାନ୍ତିର ପଥ ସ୍ୱାଧୀନତାର ପଥ, ମାନବ ମର୍ଯ୍ୟାଦାର ପଥ ପ୍ରଶସ୍ତ କରି ତୋଳିବାକୁ, ଭବ ବିଶ୍ୱର ସମସ୍ତଙ୍କ ପାଇଁ ଏକ ସୁନ୍ଦର ଭବିଷ୍ୟତ ସୃଷ୍ଟି ତୋଳିବାକୁ ମୁଁ ଅନ୍ୟ ସମସ୍ତଙ୍କ ସହିତ ମିଳିତ ହୋଇ ଯଥା ସାଧ୍ୟ ଚେଷ୍ଟା କରିବ ।

ଯଦି ଅମ୍ଭେମାନେ-ବିଶେଷତଃ ଯେଉଁମାନେ କେତେକର ସ୍ଥାନ ନେଇଅଛନ୍ତି, ଅମ୍ଭମାନଙ୍କର ଅନ୍ତର୍ନିହିତ ସମସ୍ତ ଶକ୍ତି ସେଇ ଯଦି ଏହି ଉଦ୍ଦେଶ୍ୟ ସାଧନରେ ନିୟୋଗ କରନ୍ତି, ତେବେ ଭବିଷ୍ୟତ ବିଶ୍ୱର ଗଣର ଅମ୍ଭେ ହେବା ଅର୍ଜନ କରିବୁଁ । ଯଦି ଅମ୍ଭେମାନେ ଏହି କର୍ତ୍ତବ୍ୟରେ ଅବହେଳା କରୁ, ଅଥବା ପୂର୍ବର ପଥକୁ ଫେରାଇ ଧରୁଁ ଏବ ଅଳ କାଳର ଦୁର୍ବଳ ଅର୍ଥ ଯେତେବେଳେ ସମୃଦ୍ଧ ସ୍ୱାଧୀନ ଏବ ଜାତିଗତ ଅନୁଭୂତ୍ୟା-ଏଣୁ ସମ୍ଭବତ ବିଶ୍ୱର କହିବାକୁ ଅମ୍ଭମାନଙ୍କର କେହି ରହିବ ନାହିଁ ।

ମୁଁ ଏଠାକୁ ଏପରି ଏକ ଜାତିର ପ୍ରତିନିଧି ରୂପେ ଆସିଛି, ଯେଉଁ ଜାତି ଅନ୍ୟ ଦେଶର ଜମିକୁ ମାଣେ ହେଲେ ଜମି ଅବଶ୍ୟକ କରେ ନାହିଁ; ଅପର ଦେଶ ସରକାର ଉପରେ କର୍ତ୍ତୃତ୍ୱ କରିବାକୁ ଚାହେଁ ନାହିଁ, ବାଣିଜ୍ୟ ବା ରାଜନୀତି କ୍ଷେତ୍ରରେ ସାମ୍ରାଜ୍ୟ ବିସ୍ତାର ଯାହାର ଦରକାର ନାହିଁ ଅଥବା ଅପର ଦେଶକୁ ଦବାଇ ରଖି କ୍ଷମତା ସମ୍ଭୋଗର ଯାହାର କୌଣସି ବାସନା ନାହିଁ । ଏହି ଜାତି ମଣିଷର ଶାନ୍ତି ଓ ସ୍ୱାଧୀନତାର ଉଜ୍ଜ୍ୱଳ ଓ ଶାଶ୍ୱତ ଆକାଂକ୍ଷାକୁ ବାସ୍ତବ ରୂପରେ ରୂପାୟିତ କରି ତୋଳିବା ପାଇଁ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛି ।

ମୁଁ ଭାରତର ଜଣେ ବନ୍ଧୁ ଭାବରେ ଏଦେଶକୁ ଆସି ଅଛି ଏବ ଭାରତର ୧୮୦ ସହସ୍ର ବନ୍ଧୁର ତରଫରୁ କଥା କହୁଅଛି । ମୋର ବହୁ ଦିନର ଇଚ୍ଛା ଥିବ ଯେ, ମୁଁ ନିଜେ ଆସି ଭାରତର ଜନଗଣ ପ୍ରତି, ସେମାନଙ୍କର ସଂସ୍କୃତି, ସେମାନଙ୍କର ପ୍ରଗତି ପ୍ରତି ଏବ ସ୍ୱାଧୀନ ଜାତି ସମୂହ ମଧ୍ୟରେ ସେମାନଙ୍କର ଶକ୍ତିମତ୍ତା ପ୍ରତି ଅମ୍ଭେମାନଙ୍କର ଶ୍ରଦ୍ଧା ଜଣାଇବ । ମୋର ସେ ଇଚ୍ଛା ପୂର୍ଣ୍ଣ ହେଲା ।

ସମସ୍ତ ମାନବ ଜାତି ଏହି ଦେଶ ପ୍ରତି ଋଣୀ । କିନ୍ତୁ ଏହି ଦେଶ ସହିତ ଅମ୍ଭେ ଅମେରିକା ବାସୀ ମାନେ ଗୋଟିଏ ବିଶେଷ ସମସ୍ୱାର୍ଥ ଯୋଗରେ ଆବଦ୍ଧ ।

ଆପଣ ଓ ଅମ୍ଭେମାନେ ଉଭୟେ ପ୍ରଥମରୁ ଗଣତନ୍ତ୍ର ସଂସ୍କାରଣର ନୀତି ଅନୁସରଣ କରି ଆସୁଅଛୁଁ । ଆପଣମାନଙ୍କର ଓ ଅମ୍ଭମାନଙ୍କର ଉଭୟ ଦେଶରେ ନାନା ଜାତି, ନାନା ଭାଷା ଭାଷୀ ଲୋକ, ନାନା ଧର୍ମ ରହିଅଛି । କିନ୍ତୁ ଏହି ବିଭିନ୍ନତା ଓ ବୈଚିତ୍ର୍ୟ ମଧ୍ୟରେ ବ ଅମ୍ଭମାନଙ୍କ ଉଭୟ ଦେଶ ଜାତୀୟ ଐକ୍ୟ ଅର୍ଜନ କରିଅଛି । ଯେପରି ଆପଣ ମାନେ ସେହିପରି ଅମ୍ଭେମାନେ ବ ସବ ଦିନୁ ଜାଣୁଁ ଯେ, ଅମ୍ଭମାନଙ୍କ ପଥ ଏକମାତ୍ର ପଥ । ଅମ୍ଭେମାନେ ଉଭୟେ ଅମ୍ଭମାନଙ୍କ ଦୁର୍ବଳତା ଓ ତ୍ରୁଟି ବିଚ୍ୟୁତି ସମ୍ବନ୍ଧରେ ସଚେତନ । ଅମ୍ଭେ ଉଭୟ ଦେଶ ଚାହୁଁ ଯେ, ରାଷ୍ଟ୍ର ନିଜ ଜାତିର ଅଥବା ଅନ୍ୟ ଜାତିର ସେବା କରିବ, ସେମାନଙ୍କ ଉପରେ ପ୍ରଭୁତ୍ୱ ନୁହେ ଏବ ଏହି ଭାବରେହିଁ ଅମ୍ଭେମାନେ ଅମ୍ଭମାନଙ୍କର ସମସ୍ତ ନାଗରିକ ଜୀବନ ଯାତ୍ରାକୁ ଉନ୍ନତତର କରିବାକୁ ଚାହୁଁ ।

ସର୍ବୋଦୟ, ଅମ୍ଭମାନଙ୍କର ମୂଳ ଲକ୍ଷ୍ୟ ଅଟନ୍ତୁ ।

ଗତବର୍ଷ ପ୍ରେସିଡେଣ୍ଟ ଆପଣମାନଙ୍କ ପ୍ରଖ୍ୟାତ ପ୍ରଧାନ ମନ୍ତ୍ରୀ ନିଯୁକ୍ତ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ମୋର ଯେତେବେଳେ ଆତିଥ୍ୟ ଗ୍ରହଣ କରିଥିଲେ, ସେତେବେଳେ ସେ କହିଥିଲେ :

"ବିଶ୍ୱରେ ଶାନ୍ତି ପ୍ରତିଷ୍ଠା କରିବାକୁ ହେଲେ ଅମ୍ଭମାନଙ୍କୁ ତିନୋଟି ଅନିଷ୍ଟକର ବସ୍ତୁ ଦୂର କରିବାକୁ ହେବ । ସେଗୁଡ଼ିକ ହେଉଛି— ରାଜନୈତିକ ଦାସତ୍ୱ, ବର୍ଣ୍ଣ ବୈଷମ୍ୟ ଓ ଅର୍ଥନୈତିକ ଦୁର୍ଗତି" ।

ଅମ୍ଭମାନଙ୍କର ପ୍ରଜାତନ୍ତ୍ର ଜାତିର ପ୍ରତିଷ୍ଠାକାଳ ଅବଧି ଠିକ ଏହି ତିନୋଟି ଅନିଷ୍ଟକର ବସ୍ତୁ-ରାଜନୈତିକ ଦାସତ୍ୱ, ଜାତି ବୈଷମ୍ୟ ଓ ଅର୍ଥ ନୈତିକ ଦୁର୍ଗତି ବିରୁଦ୍ଧରେ ନିରବଚ୍ଛିନ୍ନ ସଂଗ୍ରାମ ଚଳାଇ ଯିବାକୁ ପ୍ରତିଜ୍ଞାବଦ୍ଧ ।

ଏହି ଗୁଡ଼ିକ ମଧ୍ୟରୁ କୌଣସି ବିଶେଷ ଗୋଟିକର ବିରୁଦ୍ଧରେ ଅଭିଯାନ ଚଳାଇ ଅମେରିକା ସଂଗେ ସଂଗେ ଯେ ସାଫଲ୍ୟ ଲାଭ କରିଛି ତାହା ନୁହେଁ; ବସ୍ତୁତ ଯେତେ ମାନବ ପ୍ରକୃତିର ପରିବର୍ତ୍ତନ ନ ହେଲେ ଏହି ବ୍ୟାଧି ଗୁଡ଼ିକୁ ସମ୍ପୂର୍ଣ୍ଣ ଭାବରେ ଦୂର କରା ଯାଇ ପାରିବ ନାହିଁ । କିନ୍ତୁ ଆମ ଦେଶରେ ବିଗତ ଦୁଇଶହ ବର୍ଷ ଯାବତ ଅମ୍ଭମାନଙ୍କର ସବୁଜନ ଉଦ୍ଦେଶ୍ୟ ନେତୃବର୍ଗ ଏହି ପାପ ଗୁଡ଼ିକୁ ମୂଳୋତ୍ପାଟନ ପାଇଁ ଅମ୍ଭମାନଙ୍କ ଧନପ୍ରାଣ ଉତ୍ସର୍ଗ କରିବାକୁ ପ୍ରେରଣା ଦେଇ ଆସୁଛନ୍ତି । ଅମ୍ଭମାନଙ୍କ ଜାତିର ମଙ୍ଗଳ ପାଇଁ ଏହି ପ୍ରଚେଷ୍ଟାରୁ ଅମ୍ଭେମାନେ କେବେହେଲେ ବିରତ ହେବୁ ନାହିଁ ।

ଶ୍ରୀ ନେହେରୁଙ୍କ ଏହି କଥା ଉଚ୍ଚାରଣ ପରେ ଗତବର୍ଷ ବିତି ଯାଇଛି । କିନ୍ତୁ ନୈରାଶ୍ୟ ବାଦୀ ହୁଏତ କହିବେ, ଏହି ତିନି ପାପ ପୃଥିବୀରେ ବର୍ତ୍ତମାନ ସୁଦ୍ଧା ଯେ କେବଳ ବାକି ରହିଛି ତାହା ନୁହେଁ; ଏମାନଙ୍କର ତୀବ୍ରତା ବର୍ତ୍ତମାନ ସୁଦ୍ଧା ହ୍ରାସ ପାଇବ ନାହିଁ । ସେମାନେ ହୁଏତ ସିଦ୍ଧାନ୍ତ କରି କହିବେ ଯେ, ଭବିଷ୍ୟତରେ ମଧ୍ୟ ଅତୀତର ପୁନରାବୃତ୍ତି ଘଟିବ; ପୃଥିବୀ ସଙ୍କଟ ପରେ ସଙ୍କଟର ଘୂର୍ଣ୍ଣାବର୍ତ୍ତରେ ପଡ଼ିବ; ଉଦ୍ବେଜନା ଓ ବିଦ୍ୱେଷରୁ ମଣିଷ କେବେହେଲେ ହେଁ ପରିତ୍ରାଣ ପାଇବ ନାହିଁ, ଆଉ ଆକ୍ରମଣାତ୍ମକ କାର୍ଯ୍ୟ କଳାପ ନିଜେ ଅନିବାର୍ଯ୍ୟ ଭାବରେ ବିଶ୍ୱବ୍ୟାପୀ ଯୁଦ୍ଧର ଦାବାନଳ ରୂପରେ ଆତ୍ମପ୍ରକାଶ କରିବ ।

ନୈରାଶ୍ୟବାଦୀ ଏହି ଭାବରେ କହିବେ ଏବ ଅମ୍ଭେମାନେ ଯଦି କେବଳ ବ୍ୟର୍ଥତା ଓ ହତାଶାର ହିସାବ ନିକାଶ କରୁଁ, ତେବେ ସମ୍ଭବତ ଅମ୍ଭେମାନେ ମଧ୍ୟ ଏହି ନୈରାଶ୍ୟ ବାଦୀମାନଙ୍କର ସ୍ୱରରେ ସ୍ୱର ମିଳାଇବୁଁ ।

ଅମ୍ଭେ ଆମେରିକା ବାସୀମାନେ ଏକ ଶତାବ୍ଦୀ ଧରି ମହାନତା ଓ ଶୋଚନୀୟ ଅବସ୍ଥା ମଧ୍ୟରେ ଦେଇ କାଳାତିପାତ କରିଅଛୁଁ । କୋରିଅ ପ୍ରାୟଦ୍ୱୀପରେ ରାଷ୍ଟ୍ରପୁଞ୍ଜ ଓ ଆଇନର ଶାସନର ମର୍ଯ୍ୟାଦା ଯହିଁରେ ରକ୍ଷିତ ହୁଏ, ସେଥିପାଇଁ ଆମ୍ଭମାନଙ୍କର ହଜାର ହଜାର ପରିବାରକୁ ପ୍ରଭୂତ ମୂଲ୍ୟ ଦେବାକୁ ହୋଇଛି । ଆମ୍ଭମାନଙ୍କ ଦେଶର ଲକ୍ଷ ଲକ୍ଷ ଗୃହରେ-ପ୍ରତି ଗୃହରେ ଅନ୍ତତଃ ଜଣେ ଚିର ଅନୁପସ୍ଥିତ ଥିବ ସେହି ପିଲାକୁ ତାହାର ଯୌବନର କେତୋଟି ବର୍ଷ ପରରାଜ୍ୟ ଆକ୍ରମଣ ପ୍ରତିରୋଧରେ ବ୍ୟୟ କରିବାକୁ ହୋଇଛି । ଏହି ଦଶ ବର୍ଷରେ ଆମେରିକାରେ ଆମ୍ଭମାନଙ୍କ ନିକଟରେ ବହୁ ଉଦ୍ବେଗର ସମ୍ବାଦ ଆସି ପହଞ୍ଚୁ ଥାଏ ।

ନିଶ୍ଚିତ ରୂପେ ଏହି ସମସ୍ତ ବିପଦ ସଙ୍କେତର ମୂଳଥିଲା ବୃହତ ସାମରିକ ଶକ୍ତି ପୁଞ୍ଜରେ ଏକ ବଳାତ୍ମକ ମତବାଦ ଠାରୁ । ବିଦ୍ୟମାନ ଆକ୍ରମଣାତ୍ମକ ଅଭିପ୍ରାୟ ମଧ୍ୟରେ ଏହି ଅବସ୍ଥାରେ ଆମେ ଆମେରିକା ବାସୀମାନେ ଆକ୍ରମଣ ପ୍ରତିରୋଧ ପାଇଁ ଉପଯୁକ୍ତ ସଶସ୍ତ୍ର ବାହିନୀ ମାଧ୍ୟମରେ ଆମ୍ଭମାନଙ୍କର ସଂକଳ୍ପ ସ୍ପଷ୍ଟ ଭାବରେ ପ୍ରକାଶ କରିବା ପ୍ରୟୋଜନ ବୋଲି ମନେ କରୁଛୁଁ । ଏଥିରେ କେବଳ ଆମ୍ଭମାନଙ୍କର ସୁରକ୍ଷା ହେବ ନାହିଁ । ଆମ୍ଭମାନଙ୍କର ଯେଉଁ ସବୁ ବନ୍ଧୁ ଓ ସଙ୍ଗୀ ଅଛନ୍ତି, ଯେଉଁମାନେ ଏହି ବିପଦ ବୁଝି ପାରୁଅଛନ୍ତି, ସେମାନଙ୍କର ଏଥିରେ ସୁରକ୍ଷା ହେବ । ଶକ୍ତି ଅସ୍ତ୍ର ରକ୍ଷାହିଁ ଏହାର ଉଦ୍ଦେଶ୍ୟ । ଏହି ଶକ୍ତି ଅର୍ଜନ କରିବାକୁ ଯାଇ ଆମ୍ଭେମାନେ ବିଶ୍ୱାସ କରୁଁ ଯେ, ବର୍ତ୍ତମାନ ଓ ଭବିଷ୍ୟତ କାଳ ପାଇଁ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ଲାଗି ଆମ୍ଭେମାନେ ଗୋଟିଏ ପ୍ରୟୋଜନୀୟ ଅବଦାନ ରଖିଅଛୁଁ ।

ଐତିହାସିକ ଦର୍ଶନ ଏବଂ ସ୍ୱାଭାବିକ ପ୍ରବୃତ୍ତିବଶ ହେଉ ମାର୍କିଣ ଯୁକ୍ତରାଷ୍ଟ୍ର ସର୍ବଦା ଆନ୍ତର୍ଜାତିକ ବିବାଦ ଓ ସମସ୍ୟା ମୀମାଂସାରେ ଶକ୍ତି ପ୍ରୟୋଗ ପଦ୍ଧତିକୁ ବର୍ଜନ କରିଅଛି ଏବଂ ବର୍ତ୍ତମାନ ମଧ୍ୟ କରେ । ଯଦିଓ ଆମ୍ଭେମାନେ ସ୍ୱାଧୀନ ବିଶ୍ୱର ନିରାପତ୍ତା ପାଇଁ ସବୁ ପ୍ରକାରରେ ସଚେଷ୍ଟ ରହିଛୁଁ ତେବେ ବି ଆମ୍ଭେମାନେ ପାରସ୍ପରିକ ଚୁକ୍ତ୍ୟାନ୍ତର ଭିତ୍ତିରେ ଅସ୍ତ୍ରଶସ୍ତ୍ର ହ୍ରାସ ପାଇଁ ଚେଷ୍ଟା କରି ଯିବୁଁ ।

ଆମ୍ଭମାନଙ୍କର ଚତୁରତାର କାରଣ ଯଦିଓ ସୁରକ୍ଷା ଏବଂ କୌଶଳଗତ ନିରାପତ୍ତା ବ୍ୟବସ୍ଥା ଅବଲମ୍ବନ କଲେ ସୁଦ୍ଧା ଆମେରିକା ବାସୀମାନେ ବିଶ୍ୱର ରାଜନୈତିକ, ଆର୍ଥିକ ଓ ବୈଷୟିକ ଅଗ୍ରଗତିରେ ସକ୍ରିୟ ଅଂଶ ଗ୍ରହଣ କରି ଅଛନ୍ତି । ଏହି ସବୁ କାର୍ଯ୍ୟ ମଣିଷର ସମ୍ମାନ ଓ ସ୍ୱାଧୀନତାର ଆଦର୍ଶର ଅନୁକୂଳ ବୋଲି ଆମ୍ଭେମାନେ ବିଶ୍ୱାସ କରୁଁ । ଭବିଷ୍ୟତରେ ଅନୁରୂପ ଓ ଅଧିକ ବୃହତ୍ତର କାର୍ଯ୍ୟ କରାଯିବ ବୋଲି ଆମେରିକାବାସୀ ଆନନ୍ଦ ବୋଧ କରନ୍ତି । ଏଥି ପାଇଁ ଅନ୍ୟାନ୍ୟ ଯେଉଁ ସମସ୍ତ ଜାତି ଦଶନ୍ଧରେ ଯେଉଁମାନେ ନୂଆ ସ୍ୱାଧୀନତା ଲାଭ କରିଛନ୍ତି ସେମାନଙ୍କର ଉନ୍ନତ ଜୀବନର ସଂଗ୍ରାମ ଆମ୍ଭେମାନେ ବହୁ ଉତ୍କଣ୍ଠା ସହ ଲକ୍ଷ୍ୟ କରି ଥାଉଁ ।

ଦଶବର୍ଷ ପୂର୍ବେ ଭାରତ ଯେତେବେଳେ ନୂଆ ନୂଆ ସ୍ୱାଧୀନତା ଲାଭ କରି ଥାଏ, ସେତେବେଳେ ତାହାର ସାହସ ଓ ଦୃଢ଼ ପ୍ରତିଜ୍ଞା ଅଦମ୍ୟ । ତାହାର ସମସ୍ୟା ଅଗଣିତ ଓ ବ୍ୟାପକ; ଆଧୁନିକ ଇତିହାସରେ ଯାହାର ତୁଳନା ମିଳିବା ଖୁବ କଠିନ । ସେତେବେଳେ ନିତାନ୍ତ ଆଶାବାଦୀ ପକ୍ଷରେ ମଧ୍ୟ ଆଜି ଆପଣମାନେ ଯେଉଁ ସାଫଲ୍ୟ ଲାଭ କରିଛନ୍ତି ତାହା ଅନୁମାନ କରିବା ସମ୍ଭବ ନ ଥିବ ।

ଆଜି ଭାରତ ଦୃଢ଼ ବିଶ୍ୱାସ ସହିତ ବିଶ୍ୱର ସମସ୍ତ ଜାତି ସହିତ ଚାଲୁଅଛି । ତାହାର ଦ୍ୱିତୀୟ ପଞ୍ଚବାର୍ଷିକୀ ପରିକଳ୍ପନା ଯେ ସମ୍ପୂର୍ଣ୍ଣ ହେବାକୁ ଯାଉଅଛି ସେଥିରୁ ପ୍ରମାଣିତ ହୁଏ ଯେ, ତାହାର ସମସ୍ୟାବଳୀ ଭାରତର ନେତାମାନଙ୍କର ଦୃଢ଼ ପ୍ରଚେଷ୍ଟାର ପ୍ରତି ଚ୍ୟାଲେଞ୍ଜର ପରିମାପ ମାତ୍ର । ବିଗତ ଶତାବ୍ଦୀର ବିଶ୍ୱର ଯେ କୌଣସି କୀର୍ତ୍ତିଠାରୁ ଭାରତର ଏହି ସାଫଲ୍ୟ ଶ୍ରେଷ୍ଠ ହୋଇ ପାରେ । ଆଜିଠାରୁ ଏକ ଶତାବ୍ଦୀ ପରେ ଲୋକେ ଯେତେବେଳେ ଆମ୍ଭମାନଙ୍କ ଇତିହାସ ପଢ଼ିବେ ସେତେବେଳେ ଏହି ବିଷୟଟି ଅନେକର ସବୁ କୀର୍ତ୍ତିଠାରୁ ଅତିକ୍ରମଣ କରିଅଛି ବୋଲି ପ୍ରତୀୟମାନ ହେବ ।

ଭାରତ ଅନ୍ୟାନ୍ୟ ସବୁ ମହାଦେଶର ଜାତି ସମୂହକୁ ଉତ୍ସାହିତ ଓ ଅନୁପ୍ରାଣିତ କରୁଅଛି । ଯେ କୌଣସି ଲୋକ ଖଣ୍ଡିଏ ମାନଚିତ୍ର ନେଇ ସେଥିରେ ଯେଉଁ ଦେଶ ଗୁଡ଼ିକର ବିଗତ ଦଶବର୍ଷରେ ଦାସତ୍ୱର ପାଶରୁ ରାଜନୈତିକ ମୁକ୍ତିଲାଭ କରା ହୋଇଅଛି, ବର୍ଣ୍ଣଗତ ବୈଷମ୍ୟ ହ୍ରାସ କରାହୋଇଅଛି ଏବଂ ଅର୍ଥନୈତିକ ଦୁର୍ଦ୍ଦଶା ଅନ୍ତତଃ କିଛି ଦୂର କରା ହୋଇଅଛି ସେହି ସବୁ ଦେଶରେ ଖଣ୍ଡିଏ ଲେଖାଏ ଟିକା ବସାଇ ଯାଆନ୍ତୁ । ତାହାହେଲେ ଯେଉଁ ଚିହ୍ନସମ୍ପାତ ପଡ଼ିବା ଦେଖାଯିବ ତାହା ମଧ୍ୟରେ ଦେଇ ଏହି କଥା ସ୍ପଷ୍ଟ ହୋଇ ଉଠିବ ଯେ, ଗତ ଦଶ ବର୍ଷ ଗୋଟିଏ ଅକଲ୍ୟାଣ ଦ୍ୱନ୍ଦ୍ୱରେ ଯୁଗ ଯୁଗାନ୍ତ ଧରି ସଂଗ୍ରାମର ଗୋଟିଏ ସାଫଲ୍ୟ ଜନକ ଅଧ୍ୟାୟ ସୃଷ୍ଟି ହୋଇଛି ।

ଏହି ଦଶ ବର୍ଷର ସାଫଲ୍ୟରେହିଁ ଆଜି ଆମେ ସମସ୍ତ ମଣିଷର ଉନ୍ନତ ଜୀବନ ପଥରେ ପଦାର୍ପଣ କରିବାକୁ ସମର୍ଥ ହୋଇଅଛୁ ।

ଏହି ମୁହୂର୍ତ୍ତରେ କାହିଁ କି ଶାନ୍ତି ଓ ପ୍ରାଚୁର୍ଯ୍ୟ ଯୁଗରେ ଆମ୍ଭମାନଙ୍କର ଅଗ୍ରସର ହେବା ପଥକୁ କେଉଁ ଜଟିଳ ବାଧା ସୃଷ୍ଟି କରୁଅଛି ?

ଏହାର ଉତ୍ତର ଖୁବ ସରଳ । ଆମ୍ଭେମାନେ ଜାତି ଗୁଡ଼ିକ ମଧ୍ୟରେ ବିଶ୍ୱାସ ସ୍ଥିର କରିବାକୁ ସମର୍ଥ ହୋଇ ପାରି ନାହୁଁ । ପରିଣାମରେ କୌଣସି ଗୋଟିଏ ସରକାର ପକ୍ଷରେ ନିଜ ଦେଶରେ ଥିବା ସମ୍ପଦ ଗୁଡ଼ିକୁ ଲୋକହିତକର କାର୍ଯ୍ୟରେ ଲଗାଇବା ପାଇଁ ସହଜ ସାଧ୍ୟ ହୋଇ ଉଠି ପାରି ନାହିଁ ।

ସରକାର ଗୁଡ଼ିକ ଅନୁର୍ବର ଖର୍ଚ୍ଚରେ ଭାରବାହୀ ହୋଇ ପଡ଼ିଛନ୍ତି… ଅସ୍ତ୍ର ରକ୍ଷା ଏବଂ ସାମରିକ ଆସ୍ଥାନ ହୋଇଛି ମୂଳଲକ୍ଷ୍ୟ ଯାହାକି ଅନ୍ତର ଅସ୍ତ୍ର ଶସ୍ତ୍ର ବାହ୍ୟ ଦୁନିଆରେ ନିରର୍ଥକ ।

ବିଶ୍ୱର ଅଧିକାଂଶ ଦେଶ ଏହି ଦୁଷ୍ଟଚକ୍ରରେ ଆବଦ୍ଧ ହୋଇ ପଡ଼ିଅଛି । ସାମରିକ ଦୁର୍ବଳତା ଫଳରେ ପରରାଜ୍ୟ କର୍ତ୍ତୃକ ଆକ୍ରମଣ, ନାଶକତାମୂଳକ କାର୍ଯ୍ୟ ବା ବାହାରରୁ ଚାପର ସୃଷ୍ଟି ହୁଏ । କୌଣସି ଗୋଟିଏ ରାଷ୍ଟ୍ରର କ୍ରମବର୍ଦ୍ଧମାନ ସାମରିକ ଶକ୍ତି

ଅପର ରାଷ୍ଟ୍ର ସମୂହ ମନରେ ଯେଉଁ ଭୟର ସଞ୍ଚାର କରେ ତାହା ଫଳରେ ସେମାନେ ଅସ୍ତ୍ର ଶସ୍ତ୍ର ଓ ସାମରିକ ବ୍ୟବସ୍ଥାଦ ପାଇଁ ଅଧିକତର ସମ୍ପଦ ନିୟୋଜିତ କରିବାକୁ ପ୍ରଣୋଦିତ ହୁଏ । ସେତେବେଳେ ବିଶ୍ୱବ୍ୟାପୀ ଅସ୍ତ୍ର ପ୍ରତିଯୋଗିତା ଆରମ୍ଭ ହୁଏ । ଏହି-ସବୁ ଅସ୍ତ୍ରର ପ୍ରକୃତ ଉଦ୍ଦେଶ୍ୟ ସମ୍ବନ୍ଧରେ ସନ୍ଦେହ ରହିଥିବାରୁ ଉତ୍ତେଜନା ଅହରହ ବୃଦ୍ଧି ପାଏ । ଜାତି ସମୂହ ନିଜର ଶାନ୍ତିପୂର୍ଣ୍ଣ ଉନ୍ନତି ସୁଯୋଗ ପାଇବାରୁ ବଞ୍ଚିତ ହୁଏ । ଫଳରେ ଶୃଙ୍ଖଳା ଓ ନ୍ୟାୟ ଭିତ୍ତିରେ ପ୍ରତିଷ୍ଠିତ ଶାନ୍ତି ପାଇଁ ମଣିଷର ଆକାଂକ୍ଷା ସ୍ୱାଭାବିକ ଭାବରେ ଅହରହ ଗଭୀରତର ହୁଏ ।

ଆମମାନଙ୍କ ଏ ଯୁଗରେ ବିଶ୍ୱବ୍ୟାପୀ ନିୟନ୍ତ୍ରିତ ନିରସ୍ତ୍ରୀକରଣକୁ ଅବଶ୍ୟ ସମ୍ଭବ କରି ତୋଳିବାକୁ ହେବ । ଏହା ପାଇଁ ଲକ୍ଷ ଲକ୍ଷ ଲୋକର ଦାବୀ ଏହି ଭାବରେ ବ୍ୟାପକ ଓ ତୀବ୍ର ହୋଇ ଉଠିବ ଯେ କୌଣସି ମଣିଷ ବା କୌଣସି ସରକାର ତାହାର ପ୍ରତିରୋଧ କରି ପାରିବ ନାହିଁ ।

ପ୍ରକୃତ ନିରସ୍ତ୍ରୀକରଣ ସମ୍ଭବ କରିବା ଅନ୍ୱେଷଣରେ ଆମର ରାଷ୍ଟ୍ର ଅବିରାମ ଚେଷ୍ଟା କରି ଯିବାକୁ ପ୍ରତିଶ୍ରୁତ । ଛଅ ବର୍ଷ ପୂର୍ବେ ୧୯୫୮ ସାଲର ଏପ୍ରିଲ ମାସରେ ମୁଁ କହିଥିଲି "ନିରସ୍ତ୍ରୀକରଣ ଦ୍ୱାରା ଯେଉଁ ସଂଚୟ ହେବ ତାହାର କୋଟିଏ ମୋଟା ଅଂଶ ବିଶ୍ୱର ସାହାଯ୍ୟ ଓ ପୁନର୍ଗଠନ ତହବିଲରେ ଦାନ ପାଇଁ ଅନ୍ୟାନ୍ୟ ରାଷ୍ଟ୍ର ସହିତ ଯୋଗ ଦେବାକୁ ଯୁକ୍ତରାଷ୍ଟ୍ରର ସରକାର ତାହାର ଜନ ସାଧାରଣଙ୍କୁ ଆହ୍ୱାନ କରିବାକୁ ପ୍ରସ୍ତୁତ ଅଛି" । ଆମର ସରକାର ବର୍ତ୍ତମାନ ମଧ୍ୟ ତାହାର ଜନ ସାଧାରଣଙ୍କୁ ସେହି ଆହ୍ୱାନ ଜଣାଇବାକୁ ପ୍ରସ୍ତୁତ ।

କିନ୍ତୁ ଅସ୍ତ୍ର-ଶସ୍ତ୍ର ନିଜେ ଯୁଦ୍ଧ ସୃଷ୍ଟି କରେ ନାହିଁ—ଯୁଦ୍ଧ ସୃଷ୍ଟି କରେ ମଣିଷ ।

ଅତୀତ ଉପରେ ମଣିଷର ଦୃଷ୍ଟି ନିବଦ୍ଧ । ସେହି ମୃତ ଅତୀତରେ କ୍ଷମତାର ଅପପ୍ରୟୋଗ, ଦାୟିତ୍ୱର ଅପବ୍ୟବହାର ଏବଂ ବଳ ପ୍ରୟୋଗ ଦ୍ୱାରା ଯେ କୌଣସି ସମସ୍ୟା ସମାଧାନ ହୋଇ ପାରେ ଏହିପରି ଅସାର ବିଶ୍ୱାସ ଅନ୍ଧକାର ମଣିଷକୁ ପ୍ରଭାବିତ କରୁଅଛି ।

ମାନବିକତାର ନାମରେ ଆମେମାନେ କ'ଣ ଅତୀତର ସଂଶୟ, ଅବିଶ୍ୱାସ ଓ ଅନ୍ୟାୟ ବନ୍ଧନରେ ନିହିତ କୋଟିଏ ପଞ୍ଚବାର୍ଷିକ ଅଥବା କୋଟିଏ ପଞ୍ଚାଶ-ବାର୍ଷିକୀ ପରିକଳ୍ପନାର ସହଯୋଗିତା କରି ପାରୁ ନା ? ବର୍ତ୍ତମାନ ପୃଥିବୀରେ ଯେଉଁ ଉତ୍ତେଜନାର ବାତାବରଣ ରହିଛି ତାହାର କାରଣ ଦୂର କରିବା ବା ହ୍ରାସ କରିବା କାର୍ଯ୍ୟରେ ଆମେମାନେ କ'ଣ ନିଜକୁ ନିୟୋଜିତ କରି ପାରିବା ନାହିଁ ? ଏହି ସମସ୍ତ ପରିସ୍ଥିତି ସରକାର ସମୂହର ସୃଷ୍ଟି ଏବଂ ସରକାର ଗୁଡ଼ିକ ଏହି ଗୁଡ଼ିକର ପରିପୋଷକ । ବିଶ୍ୱର ଜନ ସାଧାରଣ ଯଦି ବ୍ୟାପକ ପ୍ରଚାର ଓ ପ୍ରଚ୍ଛନ୍ନ ମୁକ୍ତ ହୋଇ ଥାନ୍ତେ ତାହାହେଲେ ସେମାନେ କେବେହେଲେ ଏହି ଉତ୍ତେଜନା ଅନୁଭବ କରି ନ ଥାନ୍ତେ ।

ମୋର ଅଭିଜ୍ଞତାର କେତେ ଗୁଡ଼ିଏ ଉଦାହରଣ ଦେବାକୁ ମୋତେ ଅନୁମତି ଦିଅନ୍ତୁ । ହାର୍ଭାର୍ଡ ଗତ ବର୍ଷ ମାର୍କିଣ ଯୁକ୍ତରାଜ୍ୟ ଅନ୍ତର୍ଗତ କୋଟିଏ ସାର୍ବଭୌମ ରାଷ୍ଟ୍ର ରୂପେ ସ୍ଥାନ ଲାଭ କରିଅଛି । ଏହି ରାଜ୍ୟର ଅଧିବାସୀ ଯେଉଁମାନଙ୍କର ପୈତୃକ ଆବାସ ଥିଲା ଏସିଆରେ, କାହାର ବା ଆଫ୍ରିକାରେ, କାହାର ବା ୟୁରୋପରେ ବା ଉତ୍ତର ଆମେରିକାରେ । ନାନା ଧର୍ମମତ ଓ ବର୍ଣ୍ଣର ଲୋକ ସେଠାରେ ଅଛି । କିନ୍ତୁ ସେମାନେ ସମ୍ପୂର୍ଣ୍ଣ ମୈତ୍ରୀ ଭାବରେ ପରସ୍ପର ପ୍ରତି ଅନୁରାଗୀ ରହି ଜୀବନ ଯାପନ କରେ, ଅପରର କଲ୍ୟାଣ ମଧ୍ୟ ଦେଇ ନିଜର କଲ୍ୟାଣ ସାଧନ କରେ ।

ଆମର ବହୁକ୍ଷେତ୍ରରେ ହାର୍ଭାର୍ଡ ଅବିରତ ପ୍ରଚାର କରି ଚାଲିଛି ଯେ ଜାତି ଓ ବର୍ଣ୍ଣ ବୈଷମ୍ୟ ସତ୍ତ୍ୱେ ମଧ୍ୟ ଭାତୃ-ବନ୍ଧନର ଐକ୍ୟ ଅବିଚ୍ଛେଦ୍ୟ । ବିଶ୍ୱ ଆଜି ହାର୍ଭାର୍ଡର ସତ୍ୟର ସନ୍ଧାନ ଏକାନ୍ତ ଚିତ୍ତରେ ଶୁଣିବା ଉଚିତ ।

କଲମ୍ବିଆ ବିଶ୍ୱବିଦ୍ୟାଳୟର ପ୍ରେସିଡେଣ୍ଟ ହିସାବରେ ମୁଁ ପ୍ରତିବର୍ଷ ବିଶ୍ୱର ସବୁ ରାଷ୍ଟ୍ରରୁ ଆସୁଥିବା ଛାତ୍ର ଛାତ୍ରୀଙ୍କୁ ଅଭିନନ୍ଦନ ଜଣାଏ । ସେମାନଙ୍କର ବନ୍ଧୁତାର ତରଙ୍ଗ ଆଜି ମୋର ସ୍ମୃତିରେ ଅତି ସବୁଜ ହୋଇ ରହିଛି । ଏହି ବିଶ୍ୱବିଦ୍ୟାଳୟରେ ରହିଛି ଭାରତ, ଚୀନ, ଜାପାନ ଓ ଏସିଆର ଅନ୍ୟାନ୍ୟ ଦେଶରୁ ଆଗତ ଛାତ୍ର-ଛାତ୍ରୀମାନେ । ସେମାନେ ଅତୀତର ସମସ୍ତ ସଂସ୍କାର ଓ ସନ୍ଦେହରୁ ସମ୍ପୂର୍ଣ୍ଣ ମୁକ୍ତି ଲାଭ କରି ଅଛନ୍ତି । ପ୍ରକୃତ ପକ୍ଷରେ ଏହି ପାପ ତରୁଣ ତରୁଣୀ ମଧ୍ୟରେ ପ୍ରାୟ ଦେଖା ଯାଏ ନାହିଁ ।

ଏହି ଦୁଇ ସରଳ କାହିଁରୁ ମୋର ଅଭିଜ୍ଞତା ହୋଇଛି ଯେ ବିଶ୍ୱର ଆକାଂକ୍ଷା, ସନ୍ଦେହ ଓ ସଂସ୍କାର ଅନେକାଂଶରେ ଦୂର କରା ଯାଇ ପାରେ । ଏଥି ପାଇଁ ବିଶ୍ୱର ସବୁ ଜନଗଣ ଅତୀତର କଥା ଭୁଲିଯାଇ ଏକ ସଙ୍ଗରେ ଭବିଷ୍ୟତ ଆଡ଼କୁ ଅଗ୍ରସର ହୋଇ ଯିବାକୁ ହେବ ।

ଅତୀତର ଅନ୍ୟାୟ ବର୍ତ୍ତମାନ ସୁଦ୍ଧା ପ୍ରତିବିଧାନ ହୋଇନାହିଁ, ବର୍ତ୍ତମାନ ଆମେମାନେ ଯେଉଁ ସବୁ ସମସ୍ୟାର ସମ୍ମୁଖୀନ ହୋଇଛୁ ଏବଂ ଅପରର ଦୁର୍ବଳତାର ସୁଯୋଗ ନେଇ ଯେଉଁ କ୍ଷଣସ୍ଥାୟୀ ଲାଭ ଅର୍ଜନ କରାଯାଇ ପାରେ—ଏହି ସବୁର କୌଣସି ଜିନିଷ ଆମ୍ଭମାନଙ୍କୁ ଲକ୍ଷ୍ୟ ପଥରୁ ବିଚ୍ୟୁତି କରି ପାରିବ ନାହିଁ ।

ଆମମାନଙ୍କର ପ୍ରୟୋଜନୀୟ ଶକ୍ତି ଅଛି, ସାମର୍ଥ୍ୟ ଅଛି ଓ ଜ୍ଞାନ ଅଛି । ବିଶ୍ୱର ସବୁ ଜନଗଣର ସଂକଳ୍ପ ଓ ପ୍ରଜ୍ଞା ହିଁ ବର୍ତ୍ତମାନ ଆମମାନଙ୍କର ସର୍ବାଗ୍ରେ ପ୍ରୟୋଜନ । ଏହି ଗୁଡ଼ିକ ଅର୍ଜନର ସଂଗ୍ରାମରେ ଈଶ୍ୱର ଯେପରି ଆମମାନଙ୍କୁ ଅନୁପ୍ରେରଣା ଦିଅନ୍ତୁ ।

ଆପଣମାନଙ୍କର ଜାତିର ଇତିହାସରୁ ମୁଁ ଉପଲବ୍ଧି କରୁଛି ଯେ, ଏହି ମହାନ ସଂଗ୍ରାମରେ ଭାରତ ବରାବର ପୁରୋଭାଗରେ ରହିଥିବ ।

ଆପଣଙ୍କୁ ଅଶେଷ ଧନ୍ୟବାଦ ।





ପ୍ରେସିଡେଣ୍ଟ ନବନିର୍ମିତ ଆମେରିକା ଦୂତାବାସ ପରିଦର୍ଶନ କରି ସେଠାରେ ଭାରତୀୟ ଓ ଆମେରିକାନ କର୍ମଚାରୀ ମାନଙ୍କୁ ଭାଷଣ ଦେଇଥିଲେ, ଏବଂ ପୁଷ୍ପ ଦିଲ୍ଲୀ ସହର ଦେଇ ବିଶ୍ୱବିଦ୍ୟାଳୟକୁ ମୋଟରରେ ଯୋଗେ ଯାଇଥିଲେ ।

**ଜନତା, ଜନତା, ଜନତା,** ପ୍ରତ୍ୟେକ ସମୟରେ ପ୍ରେସିଡେଣ୍ଟ ଆଇଜେନ ହାୱାର ରାଷ୍ଟ୍ରପତି ଭବନରୁ ମୋଟରରେ ଯୋଗେ ବାହାରିବା ସମୟରେ ଉତ୍କଣ୍ଠିତ ଜନତା ରାସ୍ତାରେ ଧାଡ଼ି- ବାନ୍ଧି ଛିଡ଼ା ହୋଇ ଉଲ୍ଲାସ ଧ୍ୱନିସହ ତାଙ୍କ ଉପରକୁ ଫୁଲ ପାଖୁଡ଼ା ବୃଷ୍ଟି କରୁଥାନ୍ତି । ଡିସେମ୍ବର ୧୧ ତାରିଖ ଶୁକ୍ରବାର ଦିନ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ସଭା ସମୟରେ ରାସ୍ତାରେ ଜନତା ମଧ୍ୟରେ ନୂଆ ଧରଣର ଉତ୍ସାହ ସୃଷ୍ଟି ହୋଇଥିଲା । ହିନ୍ଦୁସ୍ତାନ ଟାଇମସ ଲେଖିଥିଲା "ଶାନ୍ତି ଦୂତ- **ଆଇଜେନହାୱାରଙ୍କ** ଉପରେ ଏପରି ପ୍ରଗାଢ଼ ଅନ୍ତରଙ୍ଗତା ଥିଲା ଯେ···ସେମାନେ ଗାଡ଼ୀ ବୋଝାଇ ଗେଣ୍ଡୁଫୁଲ, ଗୋଲାପ ଫୁଲ ଏବଂ ଜେସ୍‌ମିନ ଫୁଲ ନେଇ ଆସିଥିଲେ ଏବଂ ତିନି ଇଞ୍ଚ ଘନ ଆକାରରେ ରାସ୍ତାରେ ଲମ୍ବା ହୋଇଥିବା କାର୍ପେଟ ଉପରେ ଆଚ୍ଛାଦନ କରିଦେଇ ଥିଲେ । ପୋଲିସର ବିନା ସାହାଯ୍ୟରେ ଯେତେ ବେଳେ ପର୍ଯ୍ୟନ୍ତ ଆଇଜେନ ହାୱାରଙ୍କ ମୋଟର ଏହି କାର୍ପେଟ ଉପର ଦେଇ ନ ଯାଉଛି ସେତେବେଳେ ପର୍ଯ୍ୟନ୍ତ ଯାନ ଚଳାଚଳରୁ ନିବୃତ୍ତି ସକେ ରାସ୍ତା ମଝିରେ ଉତ୍ସାହୀ ଜନତା ଛିଡ଼ା ହୋଇଥାନ୍ତି ।"

୧୯୪୯ ମସିହାରେ ଯେତେବେଳେ **ଆଇଜେନହାୱାର** କଲମ୍ବିଆ ବିଶ୍ୱ-ବିଦ୍ୟାଳୟର ସଭାପତି ଥିଲେ ସେତେବେଳେ ଏହି ବିଶ୍ୱବିଦ୍ୟାଳୟ ନେହେରୁଙ୍କୁ "ଡକ୍ଟର ଅଫ ଲ ରେ ଭୂଷିତ କରିଥିଲା । ବର୍ତ୍ତମାନ ଯେତେବେଳେ ସେହି ସମ୍ମାନ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟଙ୍କୁ ଗୋଟିଏ ସମାବର୍ତ୍ତନ ଉତ୍ସବରେ ଭୂଷିତ କରା ଗଲା ସେତେବେଳେ ନେହେରୁ ଗବର ସହିତ ଏଥିରେ ଯୋଗ ଦେଇଥିଲେ ।

ବିଶେଷ ସମାବର୍ତ୍ତନ ଉତ୍ସବ ଆରମ୍ଭ ସମୟରେ ସାଦା ଶାଢ଼ୀରେ ଭୂଷିତା ହୋଇ ବାଳିକାମାନେ ଋଗ୍ ବେଦରୁ ସଂସ୍କୃତ ଶ୍ଳୋକ ଆବୃତ୍ତି କରିଥିଲେ । ଉପାଚାର୍ଯ୍ୟ ଡଃ ଭି, କେ ଆର, ଭି, ରାଓ ଗୋଟିଏ ଅଭିଭାଷଣ କରିଥିଲେ । ଏଥିରେ ସେ ପ୍ରେସିଡେଣ୍ଟ ଆଇକଙ୍କୁ "ଶାନ୍ତିର ତୀର୍ଥଯାତ୍ରୀ, ବିଶ୍ୱ ଉନ୍ନୟନ ପାଇଁ ଧର୍ମ ଯୁଦ୍ଧର ସୈନ୍ୟ ଓ ଭାରତୀୟ ଜନଗଣର ବାଞ୍ଛିତ ବନ୍ଧୁ" ବୋଲି ଅଭିହିତ କରିଥିଲେ । ସେ ଆହୁରି କହିଲେ" "ତୃତୀୟ ବିଶ୍ୱଯୁଦ୍ଧ ଯେପରି ନ ହେବ, ସେଥି ପାଇଁ ଏହି ନୈତିକ ଦୃଷ୍ଟି ଧାରା ଅପେକ୍ଷା ଦୃଢ଼ ସଂକଳ୍ପ ଆଉ କାହାର ନାହିଁ । ସମର କ୍ଷେତ୍ରରେ ଶତ୍ରୁ କୁଳକୁ ପରାଜିତ କରି ବର୍ତ୍ତମାନ ସ୍ୱୟଂ ସମର ଦେବତାକୁ ସେ ପରାଜିତ କରିବାକୁ ଚାହାନ୍ତି" ।

ଡକ୍ଟର ଅଫ୍ ଲ ଉପାଧି ଗ୍ରହଣ କରି ପ୍ରେସିଡେଣ୍ଟ ଆଇଜେନ ହାୱାର କହିଲେ "ମୁଁ କୃତଜ୍ଞତା ଓ ବିନୟ ସହକାରେ ମାର୍କିନ ଜନ ଗଣ ନାମରେ, ଆହୁରି ଭାରତର ପ୍ରତୀକ ଏହି ସମ୍ମାନ ସଗୌରବରେ ଗ୍ରହଣ କରୁଅଛି···

'ଅନ୍ୟାନ୍ୟ ସଂସ୍କୃତିର ପ୍ରାଚୀନ ପ୍ରଭାବରୁ ସବଳୀକୃତ ହେବାର ସୌଭାଗ୍ୟ ମାର୍କିନ ଯୁକ୍ତରାଷ୍ଟ୍ର ରେ ଆମ୍ଭମାନଙ୍କର ହୋଇଛି । ଭାରତୀୟ ଦାର୍ଶନିକ ଚିନ୍ତା-ଧାରା ଓ ରଚନା ବଳୀ ଆମେରିକାର ମନ ଓ ଚିନ୍ତା କ୍ଷେତ୍ରରେ ଅଜଣା ନୁହେଁ ।

ଯେଉଁ ମାନେ ପ୍ରେସିଡେଣ୍ଟ ଆଇଜେନ ହାଓ୍ୱାରଙ୍କ ଦୀର୍ଘ ଓ ଦୁଷ୍କର ସଫରରେ ଯାତ୍ରୀ ହୋଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ତାଙ୍କ ପରିବାରର ଦୁଇଜଣ ଲୋକ, ପୁତ୍ର ମେଜର ଜନ୍ ଆଇଜେନ ହାଓ୍ୱାର ଓ ପୁତ୍ରବଧୂ ବାରବାରା ଆଇଜେନେ ହାଓ୍ୱାର । କ୍ଷୀଣାଙ୍ଗୀ ଓ ସୁନ୍ଦରୀ ବାରବାରା ସ୍ୱାମୀଙ୍କ ସହିତ ଅନେକ ଗୁଡ଼ିଏ ଅନୁଷ୍ଠାନ ଓ ସ୍ୱାସ୍ଥ୍ୟ ଯୋଜନାକୁ ପ୍ରଶଂସା କରିଥିଲେ ସ୍ୱଭାବେ ସରକାରୀ କାର୍ଯ୍ୟରୁ ନିଜକୁ ଅଲଗା ରଖିଥିଲେ । ତିନୋଟି କନ୍ୟା ଓ ଏଗାର ବର୍ଷର ପୁତ୍ରକୁ ଓ୍ୱାଶିଂଟନରେ ରଖି ଦେଇ ଆସି ବାରବାରା ନିଜକୁ ମୁକ୍ତ ସରଳ ଓ ଆନନ୍ଦ ଅନୁଭବ କରୁଥିଲେ ।

ଭାରତରେ ଅବସ୍ଥାନ କାଳରେ ପ୍ରେସିଡେଣ୍ଟଙ୍କ ପୁତ୍ରବଧୂ ବାରବାରାଙ୍କର ଅମେରିକା ଗୃହିଣୀ ରୂପରେ ତାଙ୍କର ଚିନ୍ତନ ଅତି ଭଲଭାବରେ ବିକାଶିତ ହୋଇ ଉଠିଥିଲା । ଦେଶର ଦୃଶ୍ୟ ଓ ନିନାଦ ଏବଂ ଭୂମିର ଅତିଥେୟତା ତାଙ୍କର କଳ୍ପନା ରାଜ୍ୟକୁ ଜୟ କରିଥିଲା । ସୁସଜ୍ଜିତ ହସ୍ତୀ ପିଠିରେ ହାଉଦା ଉପରେ ବସି ଅଥବା ମାଟି ମେଜରେ ଗୋଡ ଉପରେ ଗୋଡ଼ ଦେଇ ବସି ଚରଖାରେ ସୂତା କାଟି ଭାରତୀୟ ମହିଳାଙ୍କ ଗହଣରେ ବାରବାରାଙ୍କର ସ୍ୱାଭାବିକ ସରଳ ଜୀବନ ତାଙ୍କର ସହାନୁଭୂତି ଭାବରେ ଝଂକୃତ ହୋଇଥିଲା ।

ଦିଲ୍ଲୀ ନିକଟସ୍ଥ ଏକ ଭାରତୀୟ ଗ୍ରାମାଞ୍ଚଳର ପାର୍ଶ୍ୱ ଆମୋଦ ଯାତ୍ରା ବାରବାରାଙ୍କ ଦୃଷ୍ଟି ନିବଦ୍ଧ ହୋଇ ଥିଲା । ଗ୍ରାମ୍ୟ ବେଶ ଭୂଷାରେ ଶୋଭିତ ପୁରୁଷ ଓ ସ୍ତ୍ରୀ ମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଗ୍ରାମର କମ କୋଣରେ ଘୂରି-ବୁଲି ହୋଇଥିଲେ । ତାପରେ ସାଧାରଣ ସ୍ତ୍ରୀ ମାନଙ୍କ ପରି ଦୋକାନକୁ ଯାଇ ସେଠାରେ ରେଶମ, ଶାଢ଼ୀ, ପିତଳ, ଓ ହସ୍ତ ଶିଳ୍ପ ପ୍ରଭୃତି ଅମେରିକାର ବନ୍ଧୁ ଏବଂ ନିଜ ପରିବାର ପାଇଁ ଉପହାର ଲାଗି କିଣିଥିଲେ ।

"ମୁଁ ଜାଣେ ଭାରତର ହଜାର ହଜାର ତରୁଣ ତରୁଣୀ ଆମେରିକା ବିଶ୍ୱବିଦ୍ୟାଳୟ ଗୁଡ଼ିକରେ ଅଧ୍ୟୟନ କରୁଛନ୍ତି ଏବଂ ସଙ୍ଗେ ସଙ୍ଗେ ହଜାର ହଜାର ବର୍ଷର ଇତିହାସ ସମ୍ପନ୍ନ ଏହି ଦେଶ ନିକଟରୁ ଶିକ୍ଷାଲାଭ ପାଇଁ ଆମେରିକାର ବହୁ ଅଧ୍ୟାପକ ଭାରତକୁ ଆସିଛନ୍ତି।

"ତରୁଣୀ ବର୍ଗମାନଙ୍କର ଏହି ଆଦାନ ପ୍ରଦାନ, ଆଦର୍ଶ ଓ ଭାବଧାରା ବିନିମୟ, ଯେଉଁଥି ସହିତ ପାରସ୍ପରିକ ବୁଝାମଣାର ଏହି ସେତୁ ନିର୍ମାଣ ଫଳରେ ଆମେମାନେ ବିଶ୍ୱଶାନ୍ତି ପଥରେ ଦୃଢ଼ ପଦକ୍ଷେପରେ ସକ୍ଷମ ହୋଇଛୁଁ।

"ଆପଣ ମାନଙ୍କ ନିକଟରେ ମୋର ପ୍ରସ୍ତାବ ଏହି ଯେ, ଶୀର୍ଷ ବୈଠକରେ କେତୋଟି ସରକାର ଆଲୋଚନା କରନ୍ତୁ, କିନ୍ତୁ ସଙ୍ଗେ ସଙ୍ଗେ ଯେପରି ବିଶ୍ୱବିଦ୍ୟାଳୟ ଗୁଡ଼ିକ ତରୁଣ ମହଲରେ ପାରସ୍ପରିକ ବୁଝାମଣାର ବ୍ୟାପକ ବିନିମୟର ଆୟୋଜନ କରେ।

"ମୁଁ ବିଶ୍ୱାସ କରେଁ, ବଡ଼ ବଡ଼ ପରିଷଦରେ ବକ୍ତୃତା ଠାରୁ ସବୁ ଜାତିର ବହୁ ସଂଖ୍ୟକ ତରୁଣ ତରୁଣୀ ମାନେ ଏକ ସଙ୍ଗରେ ଅଧ୍ୟୟନ ଓ ଶିକ୍ଷା ଲାଭ କଲେ ମାନବ ସମାଜ ଅଧିକତର ଲାଭବାନ ହେବ···

"ଶତ ଶତାବ୍ଦୀ ଧରି କେତେ ଦେଶ ସେମାନଙ୍କର ଯୁବକ ମାନଙ୍କୁ ଅସ୍ତ୍ର ସଜ୍ଜିତ କରି ପ୍ରତିବେଶୀ ମାନଙ୍କ ବିରୁଦ୍ଧରେ ଯୁଦ୍ଧକୁ ପଠାଉଛନ୍ତି। ଆଉ ଆସନ୍ତୁ ଆମେମାନେ ଅଧିକ ଓ ସୁସ୍ପଷ୍ଟ ଜ୍ଞାନ ଲାଭ ଆଶା ରଖି ଯୁବକମାନଙ୍କୁ ଆନ୍ତର୍ଜାତିକ ବୁଝାମଣାର ବାହକ ହିସାବରେ ମନେ କରିବା ଓ ଶାନ୍ତି ପାଇଁ ସେମାନଙ୍କୁ ଏକ ଦେଶରୁ ଅନ୍ୟ ଦେଶକୁ ପ୍ରେରଣ କରିବା···

"ବର୍ତ୍ତମାନ ଦେଶରେ ଅଭ୍ୟନ୍ତରୀଣ କ୍ଷେତ୍ରରେ ଆଇନର ପ୍ରଭୁତ୍ୱ ଯେପରି ସ୍ୱାଭାବିକ ଓ ସ୍ୱୀକୃତ, ଆନ୍ତର୍ଜାତିକ କ୍ଷେତ୍ରରେ ତାହାକୁ ସେହିପରି ସ୍ୱାଭାବିକ କରି ତୋଳିବା ପାଇଁ ସମୟ ବର୍ତ୍ତମାନ ଆସିଛି। ସ୍ପଷ୍ଟତଃ ଆନ୍ତର୍ଜାତିକ ବିଚାରାଳୟ ଆଇନର ଏହି ସୌଧର ଗୋଟିଏ ଭିତ୍ତି। ଏହା ଆନନ୍ଦର କଥା ଯେ, ଏହି ଅଦାଲତର ବିଚାର କ୍ଷେତ୍ରାଧିକାର ସ୍ୱୀକାର କରିବା ପାଇଁ ବିଶ୍ୱର ବହୁ ସ୍ଥାନରେ ଶକ୍ତିଶାଳୀ ଆନ୍ଦୋଳନ ଚାଲୁଛି। ଏହାର କ୍ଷେତ୍ରାଧିକାର ସ୍ୱୀକାର କରି ଭାରତ ଯେଉଁ ଘୋଷଣା କରିଛି ତାହା ଦୂର ଦୃଷ୍ଟିର ଓ ନେତୃତ୍ୱର ପରିଚାୟକ। ସେଥିପାଇଁ ଭାରତକୁ ମୁଁ ଅଭିନନ୍ଦନ ଜଣାଉଛି···ମୋତେ ଯେଉଁ ସମ୍ମାନ ଏଠାରେ ଆପଣ ମାନେ ଦେଖାଇଛନ୍ତି ସେଥିପାଇଁ ଧନ୍ୟବାଦ"।



"ଜନ ସେବାରେ ଉତ୍ସର୍ଗୀକୃତ ଜୀବନ ମାନଙ୍କ ପ୍ରତି ଯେଉଁ ସମ୍ମାନ ପ୍ରଦର୍ଶିତ ହୁଏ, ତନ୍ମଧ୍ୟରେ [illegible] ସର୍ବୋଚ୍ଚ [illegible] ମର୍ଯ୍ୟାଦା ଓ [illegible] ସୂତ୍ରରେ [illegible]।

ବିଶ୍ୱର କୌତୁହଳ ପ୍ରେସିଡେଣ୍ଟ ଆଇଜେନ ହାଓ୍ୟାରଙ୍କ ଭାରତ ଆଗମନରେ କେନ୍ଦ୍ରୀଭୂତ ଥିଲା। ପ୍ରାୟ ୪୦୦ଶହରୁ ଊର୍ଦ୍ଧ୍ୱ ସାଂବାଦିକ ମାନେ ନୂଆଦିଲ୍ଲୀକୁ ଏଥିପାଇଁ ଆସିଥିଲେ। ପାଞ୍ଚଦିନ ଭିତରେ ସେମାନେ ତାରଯୋଗେ ୬୦୦,୦୦୦ ଶବ୍ଦ ପଠାଇଥିଲେ ଏବଂ ୨୭୦ ଖଣ୍ଡି ରେଡ଼ିଓ ଫଟୋଗ୍ରାଫ ପଠାଇଥିଲେ। ଏହାଥିଲା ନୂଆଦିଲ୍ଲୀର ସାରାବର୍ଷର ସାଧାରଣ ସଂବାଦ ପ୍ରେରଣ ଠାରୁ ଅଧିକ। ଡାକ ଓ ତାର ବିଭାଗ ବିଚକ୍ଷଣ ତାର ସଙ୍କେତ ପ୍ରେରକମାନଙ୍କ ପାଇଁ ଅଥବା ୨୦ ଟି ଟେଲି-ଟାଇପ ଯନ୍ତ୍ରର ବ୍ୟବସ୍ଥା କରି ଯେପରି ଦ୍ରୁତ ଗତିରେ ପୃଥିବୀର ସବୁ ଅଞ୍ଚଳ ସଂବାଦ ପହଞ୍ଚିପାରେ ତାହା ପ୍ରତି ଯତ୍ନବାନ ଥିଲେ। ସାମ୍ବାଦିକମାନଙ୍କ ସାଥିରେ ଥିଲେ ଟେଲିଭିଜନ ଦଳ, ରେଡିଓ ପ୍ରଚାରକ, ଫୋଟୋଗ୍ରାଫର ଏବଂ ସିନେମା କ୍ୟାମେରାମ୍ୟାନ।



ଏକ ବାସ୍ତବିକ ଓଡ଼ଉଡ଼ । ବିଶ୍ୱର ଅତୀତର ଗୌରବ ଦୀପ୍ତ ଚିତ୍ରରେ ଦେଖା ଯାଉଥିବା ଭାବ ଭଙ୍ଗୀ ପୂର୍ଣ୍ଣ ଦୃଶ୍ୟ । ଡାଃ ପ୍ରସାଦ ଓ ପ୍ରେସିଡେଣ୍ଟ ଆଇଜେନ ହାୱାର ଛ'ଟି ବଦାମୀ ରଙ୍ଗର ଅଶ୍ୱବାହିତ ରାଷ୍ଟ୍ରୀୟ ଶକଟରେ, ଲୋହିତ ବର୍ଣ୍ଣ ଛତା ତଳେ ବସି ହାଇଦ୍ରାବାଦ ହାଉସରୁ ବିଶ୍ୱକୃଷି ମେଳା ପ୍ରାଙ୍ଗଣକୁ ଆଗମନ କରନ୍ତି ।

ଜାଲ ଓ ଶୁକାର ଅଶ୍ୱାରୋହୀ ପରିବୃତ, ରାଷ୍ଟ୍ରପତିଙ୍କ ୪୮ ଜଣ ଦେହ ରକ୍ଷୀ କେହି ବାହାରକ ଛ' ଫୁଟ ଉଚ୍ଚତାରୁ କମ ନୁହେଁ, ତାଙ୍କରେ ପଡିବାକୁ ସ୍ଥଳରେ ଧଡ ଘୋଡା ଯାହାର ପୁରୋଧାରେ ଅଗ୍ରସର ହେଉଥାଏ ।

ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦ କୃଷି ମେଳା ଉଦ୍‌ବୋଧନ କଲ ଉତ୍ତାରୁ, ପ୍ରେସିଡେଣ୍ଟ ଆଇଜେନ ହାୱାର କହିଲେ ।

"ମୋର ବାଲ୍ୟ ଓ ଯୌବନ କଟିଛି ଆମେରିକାର କୃଷି କ୍ଷେତ୍ରରେ । ବର୍ତ୍ତମାନ କର୍ମଜୀବନର ଅବସାନ ପରେ ମୁଁ କୃଷକ ହେବାର ପରିକଳ୍ପନା କରୁଛି । କର୍ମଜୀବନର ଧଡରେ ମଧ୍ୟ ମୁଁ ପୁଣି କୃଷି କ୍ଷେତ୍ରକୁ ଫେରି ଆସିବାର ଦୀର୍ଘ କାଳର ବାସନା ରହିଛି" ।

"ପୃଥିବୀରୁ ଅନ୍ତତଃ ଗୋଟିଏ ଦୁଷ୍ଟ ବ୍ୟାଧି ଦୂର କରିବା ଭଳି ବୈଜ୍ଞାନିକ ସାମର୍ଥ୍ୟ ଆମମାନଙ୍କର ବର୍ତ୍ତମାନ ଅଛି—ତାହା ହେଉଛି କ୍ଷୁଧା" ।

"କ୍ଷୁଧାର ବିରୁଦ୍ଧରେ ବିଶ୍ୱବ୍ୟାପୀ ସଂଗ୍ରାମରେ ସାଫଲ୍ୟ ଲାଭ କରିବା ଭଳି ଜ୍ଞାନ ଓ ସମ୍ପଦ ବର୍ତ୍ତମାନ ପୃଥ୍ୱୀ ମଣିଷର ଅଧିକାରରେ ଅଛି" ।

"ମାର୍କିଣ ପ୍ରଦର୍ଶନୀଟିର ମୂଳ ଆଦର୍ଶର ମଧ୍ୟ ଦେଇ ସେହି ପ୍ରକୃତ ମହତ୍ ସଂଗ୍ରାମର ଆହ୍ୱାନ ପ୍ରକାଶିତ ହୋଇଛି:

ସେହି ଆଦର୍ଶ ହେଲା 'ଖାଦ୍ୟ-ପରିବାର-ମୈତ୍ରୀ ଓ ସ୍ୱାଧୀନତା" ।

"ଦୈନନ୍ଦିନ ପ୍ରୟୋଜନ, ଉଚ୍ଚ ଲକ୍ଷ୍ୟ, ଗଭୀର ଅନୁଭବ ଏବଂ କାଳୋପଯୋଗୀ ଆଶା ଆକାଂକ୍ଷା ଉକ୍ତ ଚାରିଟି ଶବ୍ଦ ମଧ୍ୟରେ ସଂହତ ରୂପ ଲାଭ କରିଅଛି । ଏହି ଗୁଡ଼ିକ ଭାରତୀୟ ଓ ଆମେରିକା ବାସୀମାନଙ୍କୁ ଏକ ପତାକା ତଳେ ଐକ୍ୟ ବଦ୍ଧ କରି ଅଛି; ସେହି ପତାକା ହେଲା ମାନବିକ ମର୍ଯ୍ୟାଦାର ପତାକା ।

"ଏହି ଚାରିଟି ଶବ୍ଦ ଅସ୍ତ୍ର ଓ ବୋମା ଅପେକ୍ଷା ମଧ୍ୟ ଶକ୍ତିଶାଳୀ, ଯନ୍ତ୍ରପାତି ଓ ଅର୍ଥ ଅପେକ୍ଷା ମଧ୍ୟ ଅଧିକ ଶକ୍ତିଶାଳୀ, ଏବଂ ଅତୀତର ଓ ଭବିଷ୍ୟତର ଯେ କୌଣସି ସାମ୍ରାଜ୍ୟ ଅପେକ୍ଷା ମଧ୍ୟ ଅଧିକ ଶକ୍ତିଶାଳୀ...... ।



"ମୋର ଦେଶ ବାସୀ ବିଶ୍ୱାସ କରେ ଯେ, ଭାରତକୁ ଯାହା ଶକ୍ତି ଦେ[ଏ] ତାହା ଆମମାନଙ୍କ ଦେଶକୁ ମଧ୍ୟ ଶକ୍ତିଶାଳୀ କରେ। ଶାନ୍ତି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ଭାରତ ଆମମାନଙ୍କର ସହୋଦର। ଚାଳିଶ କୋଟିର ଏହି ମହାନ ଜାତି ଯେଉଁ ମାନଙ୍କର ସଂସ୍କୃତି ଓ ଇତିହାସ ଗୌରବମୟ ଏବଂ ଯେଉଁମାନେ ସ୍ୱାଧୀନ ଓ ଶକ୍ତି ଶାଳୀ ରହିବା ପାଇଁ ସାହସରେ ବଦ୍ଧ୍ୟାନ–ବିଶ୍ୱରେ ସ୍ଥାୟୀ ଏବଂ ଯଥାର୍ଥ ଶାନ୍ତି ସ୍ଥାପନରେ ବହୁତ ପ୍ରଭାବ ସୃଷ୍ଟି କରି ପାରେ। ଭାରତ ପରି ଏହି ପରି ସାହସୀ ଦୃଢ଼ ପ୍ରତିଜ୍ଞ ଏବଂ ଆଦର୍ଶ ନିଷ୍ଠ ସବୁ ଜାତି ପକ୍ଷରେ ଏହି କଥା ସମାନ ପ୍ରଯୋଜ୍ୟ।

କ୍ଷୁଧାର ଜ୍ୱାଳାରୁ ମୁକ୍ତ ଏକ ନୂତନ ବିଶ୍ୱ ଗଠନରେ-ଯେଉଁଠାରେ ପ୍ରତ୍ୟେକ ପରିବାର ପରିପୂର୍ଣ୍ଣ ଓ ସମୃଦ୍ଧିଶାଳୀ ଜୀବନ ଯାପନ କରିବ, ଭୟ ଏବ[ଂ] ସନ୍ଦେହ ସ୍ଥାନରେ ଜାତି ଗୁଡ଼ିକ ମଧ୍ୟରେ ବିରାଜ କରିବ ମୈତ୍ରୀଭାବ ଏବ[ଂ] ମଣିଷ ସ୍ୱାଧୀନ ହୋଇ ସୁଖର ସନ୍ଧାନରେ ଫେରିବ-ଆମ୍ଭେମାନେ ସେମାନଙ୍କ ସହିତ ସହଯୋଗିତା କରି ଚାଲିବୁଁ"।

"ଅମରିକ ମେଳା'ର ପ୍ରବେଶ ପଥ ନାଲି ଫିତା ସୂତାର କସା… ସାହାଯ୍ୟରେ ରାଷ୍ଟ୍ରପତି ଆଇଜେନ ହାୱାର ୧.୨କୋଟି ଲୋକର ପ୍ରବେଶ ଲାଗି ବାଟ ଖୁଲେ। ଏହା ଥିଲା ବିଶ୍ୱ କୃଷି ମେଳାରେ ବୃହତ୍ତମ ଜାତୀୟ ପ୍ରଦର୍ଶନୀ। ଏହାର ଛାତ ମୋଗଲ ସ୍ଥାପତ୍ୟାନୁଯାୟୀ ଚାଳିଶ ଫୁଟ ଉଚ୍ଚ ଗମ୍ବୁ[ଜ] ଆକାରରେ ଗଠିତ ସୁନାଲି ରଙ୍ଗ କରା।

ପ୍ରେସିଡେଣ୍ଟ ଆଇଜେନ ହାୱାର ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କୁ 'ଅମରିକ ମେଳା' ପରିଦର୍ଶନ କରିବାକୁ ନିମନ୍ତ୍ରଣ କଲେ। ପ୍ରେସିଡେଣ୍ଟ[…] ଦୁହେଁ ଅଧୁନା ଆମେରିକାରେ ବ୍ୟବହୃତ ହେଉଥିବା ସର୍ବାଧୁନିକ କୃଷି ଯନ୍ତ୍ରପାତି ପରିଦର୍ଶନ କଲେ। ପ୍ରେସିଡେଣ୍ଟ ଆଇଜେନ ହାୱାର ସୋଟିଏ ପରମାଣବିକ ଚୁଲ୍ଲୀର ବୋତାମ ଟିପିଲେ।



ବିଶ୍ୱ କୃଷି ମେଳାରେ : ଉପରେ : ଆମେରିକାର ପ୍ରେସିଡେଣ୍ଟ କୃଷି ସମାଜର ଗୋଟିଏ ନମୁନା ପରୀକ୍ଷା କରୁଛନ୍ତି। (ଉପରେ ବାମରେ) ପରମାଣବିକ ଚୁଲ୍ଲୀରେ ବୋତାମ ଟିପୁଛନ୍ତି। (ତଳେ) ସାର୍ବଜ୍ଞ - ଅର୍ଥ - ନୈତିକ ସରଣୀ ଅଗରେ।

ରବିବାର ସକାଳ ୯ଟା ବିଶ୍ୱ ବିଖ୍ୟାତ ତାଜମହଲ ପରିଦର୍ଶନ କରି ପ୍ରେସିଡେଣ୍ଟ ଆଇଜେନହାୱାର ତାଙ୍କର ବାଲ୍ୟଜୀବନର ସ୍ୱପ୍ନକୁ ରୂପାୟିତ କଲେ । ସେ ବିମାନ ଯୋଗେ ପ୍ରଧାନ ମନ୍ତ୍ରୀ ନେହେରୁଙ୍କ ସହିତ ଆଗ୍ରାକୁ ଯାଇଥିଲେ । ସେଠାରେ ପ୍ରଧାନ ମନ୍ତ୍ରୀ ନେହେରୁ ତାଙ୍କ ଗାଇଡ ରୂପେ କାର୍ଯ୍ୟ କରିଥିଲେ । ମୋଗଲ ସମ୍ରାଟ ସାଜାହାନଙ୍କ ପ୍ରାଣ ପ୍ରିୟା ପତ୍ନୀଙ୍କ ସ୍ମୃତି ସୌଧକୁ ମୋଟର ଯୋଗେ ଯିବା ବାଟରେ ପ୍ରାୟ ୪୦୦,୦୦୦ ଜନତା ହର୍ଷ ଧ୍ୱନି ଦେଇ ସମ୍ବର୍ଦ୍ଧନା ଜଣାନ୍ତି ।

ପ୍ରଧାନ ମନ୍ତ୍ରୀ ନେହେରୁ ପ୍ରେସିଡେଣ୍ଟ ଆଇଜେନହାୱାରଙ୍କୁ ନାଲି ବାଲି ପଥରରେ ତିଆରି ତୋରଣର ପ୍ରବେଶ ପଥ ଭିତର ଦେଇ କଢ଼େଇ ନେଇ ଆସି କହିଲେ "ଏହି ବାଟ ଦେଖନ୍ତୁ" । ୭୫୦ ଫୁଟ ଦୂରରେ ରହି ପ୍ରେସିଡେଣ୍ଟ ମୁଗ୍ଧ ଚିତ୍ତରେ ସୁଶୋଭିତ ଜଳଧାର ଆଡ଼କୁ ଅନାଇ ଥାନ୍ତି ।

"ଏହାହିଁ ସେହି ସୌନ୍ଦର୍ଯ୍ୟ ଭୂମି" ପ୍ରେସିଡେଣ୍ଟ ଆଇଜେନହାୱାର କହିଲେ । "ଖୁବ ସୁନ୍ଦର, ଅତି ସୁନ୍ଦର" । ସେ ପ୍ରଧାନ ମନ୍ତ୍ରୀ ନେହେରୁଙ୍କୁ କହିଲେ ବାଲ୍ୟାବସ୍ଥାରେ ଯେତେବେଳେ ପିଲାଥିଲି ସେତେବେଳେ ମୁଁ ଏହା ବିଷୟରେ ପଢ଼ିଛି ଏବଂ ଏହାକୁ ଦେଖିବାର ସ୍ୱପ୍ନ କରିଛି । ସଫର ସୂଚୀରେ ଏହାକୁ ହିଁ ଦେଖିବାର ମୋର ମୁଖ୍ୟ ଇଚ୍ଛା ଥିଲା । ମୁଁ ଯାହା ଶୁଣିଥିଲି ତା'ଠାରୁ ଏହା ଅଦ୍ଭୁତ ଆଶ୍ଚର୍ଯ୍ୟ ଜନକ" । ତାଜମହଲର ସମ୍ବଳିତ ଖଣ୍ଡିଏ ଏ୍ୟାଲବାମ ପ୍ରେସିଡେଣ୍ଟ ଖୁସି ମନରେ ଗ୍ରହଣ କରିଥିଲେ ।

ସମାଧିର ଅନତି ଦୂରରେ ଥିବା ସର୍କିଟ ହାଉସରୁ ପ୍ରେସିଡେଣ୍ଟ ଓ ପ୍ରଧାନ ମନ୍ତ୍ରୀ ନେହେରୁ ଖଣ୍ଡିଏ ଯୁକ୍ତରାଷ୍ଟ୍ରର ହେଲିକପ୍ଟର ଯୋଗେ ଆଗ୍ରା ଛାଡ଼ିଲେ । ବିଚପୁରର କେନ୍ଦ୍ର ବିଦ୍ୟାପୀଠ ଠାରେ ଅବତରଣ କରି ସେଠାରୁ ଖଣ୍ଡିଏ ଖୋଲା ଗାଡ଼ୀରେ ଆରୋହଣ କଲେ । ଏବଂ ମାଇଲ ସଙ୍କୀର୍ଣ୍ଣ ପଥ ଅତିକ୍ରମ କରି ବରାଓଣ୍ଡା ନାମକ ଖଣ୍ଡିଏ ଖେଳିଆ ଗ୍ରାମରେ (ଲୋକ ସଂଖ୍ୟା ୭୦୦) ପହଞ୍ଚିଲେ । ଗ୍ରାମଟି ସମତଳ ଭୂମି ଉପରେ ଅବସ୍ଥିତ ଓ ଚତୁଃପାର୍ଶ୍ୱରେ ଗହମ, ଜଉ, ଆଖୁ ଓ ଅନ୍ୟାନ୍ୟ ସବୁଜ ଶସ୍ୟ କ୍ଷେତ ଦ୍ୱାରା ପରିବେଷ୍ଟିତ ।

ଏହାହିଁ ହେବ ପ୍ରେସିଡେଣ୍ଟ ଆଇଜେନ ହାୱାରଙ୍କ ଭାରତର ନବ ଜାଗ୍ରତ ପଲ୍ଲୀ ଅଞ୍ଚଳ ପରିଦର୍ଶନର ପ୍ରଥମ ସୁଯୋଗ । ପଲ୍ଲୀବାସୀମାନଙ୍କର ସ୍ନେହ ଓ ଶ୍ରଦ୍ଧା ପ୍ରେସିଡେଣ୍ଟଙ୍କୁ ମୁଗ୍ଧ କରିଥିବ । ତାଙ୍କର ଗାଡ଼ୀ ଡାଳ ଓ ପତ୍ର ଦ୍ୱାରା ନିର୍ମିତ ହୋଇଥିବା ଗୋଟିଏ ବିରାଟ ତୋରଣ ତଳରେ ଆସି ଅଟକିଲା । ଏହା ଉପରେ ହିନ୍ଦୀ ଅକ୍ଷରରେ ଲେଖା ହୋଇଥିଲା "ସ୍ୱାଗତମ୍" ।

ପ୍ରେସିଡେଣ୍ଟ ଗାଡ଼ୀରୁ ଓହ୍ଲାଇବା କ୍ଷଣି ଗ୍ରାମବାସୀ ମାନେ ତାଙ୍କ ଉପରକୁ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ । ଅତିଥ୍ୟ ପରମ୍ପରା ସେବକ ଗହଳରେ ସେ ୧୦ ଘଣ୍ଟା ଅତିବାହିତ କରି ଯେଉଁ ପୁଷ୍ପ ବୃଷ୍ଟିରେ ଅଭ୍ୟସ୍ତ ହୋଇଥିଲେ ଏହା ଥିଲା ତା ଠାରୁ ଭିନ୍ନ । ମୌସୁମୀ ପ୍ରବାହ ପରି ପୁଷ୍ପବର୍ଷା ପ୍ରେସିଡେଣ୍ଟଙ୍କ ଉପରେ ଆସି ପଡୁଥାଏ । ବର୍ଷଣର ଏ ପୁଷ୍ପବର୍ଷା ଆଗରେ ପ୍ରେସିଡେଣ୍ଟ ମୁଣ୍ଡ ନୁଆଁଇ ଛିଡ଼ା ହୋଇ ଥାନ୍ତି । ଏଥି ମଧ୍ୟରେ ପଲ୍ଲୀବାସିମାନେ ଭିଡ଼ ବାନ୍ଧି ସବୁ ପ୍ରଧାନ ମନ୍ତ୍ରୀ ନେହେରୁ ସେମାନଙ୍କୁ ସରାଇବାକୁ ଚେଷ୍ଟା କରୁଥାନ୍ତି । ସେମାନେ ଅତି ଧୀର ସ୍ୱଭାବ ଥିଲେ । ଗୋଟିଏ ସ୍ଥାନରେ ଜଣେ ବୃଦ୍ଧା ମୁଣ୍ଡରେ ଓଢ଼ଣା ଦେଇ ଧାଇଁ ଆସି ପ୍ରେସିଡେଣ୍ଟଙ୍କ କପାଳରେ ଓ ପରେ ପ୍ରଧାନ ମନ୍ତ୍ରୀ ନେହେରୁଙ୍କ କପାଳରେ ସିନ୍ଦୁରର ତିଳକ ଟିକାଇ ଦେଇ ଶୁଭ ଭାଗ୍ୟର ନିଦର୍ଶନ ବୋଲି ସୂଚାଇଲା । ସ୍ତ୍ରୀମାନେ ପଛରେ ଛିଡ଼ା ହୋଇ ପ୍ରାଚୀନ ଗୀତ ଗାଇଥିଲେ । ପ୍ରାଚୀନ ଯୁଗରେ ଏହି ଗୀତଗାନ୍ ସେମାନଙ୍କର ପୂର୍ବ ପୁରୁଷ ମାନେ ଯୁଦ୍ଧ ଭୂମିରୁ ବିଜୟୀ ହୋଇ ଫେରିଥିବା ଯୋଦ୍ଧାଙ୍କୁ ଅଭିନନ୍ଦନ ଜଣାଉ ଥାଆନ୍ତି । ଗ୍ରାମ୍ୟ ବଧୂମାନେ ବିଚିତ୍ର ବର୍ଣ୍ଣାଢ୍ୟ ପୋଷାକରେ ସଜ୍ଜିତ ହୋଇ ଥିଲେ-କେହି ନାଲି, କେହି ଗୋଲାପି ବା କେହି ହଳଦିଆ ଶାଢ଼ୀରେ ।

କରଣ ସିଂ ଏହି ଗ୍ରାମର ପ୍ରଧାନ । ସଂକ୍ଷିପ୍ତ ଭାଷଣ ଦେଇ ପ୍ରେସିଡେଣ୍ଟ ଆଇଜେନ ହାୱାରଙ୍କୁ ଅଭିନନ୍ଦନ ଜଣାଇଲେ । ସେ କହିଲେ ଉନ୍ନୟନ ବ୍ଲକର ଅନ୍ୟତମ ପଲ୍ଲୀ ହିସାବରେ ଏହି ବରାଓଣ୍ଡା ଗ୍ରାମ ନିଜର ଦେଶ ଦେଇ ଉନ୍ନତ ଦେଶକୁ ଅଗ୍ରସର ହେଉଛି । ପ୍ରେସିଡେଣ୍ଟ ଆଇଜେନ ହାୱାର ଗୃହ-ପାଳିତ ପଶୁ ଗୁଡ଼ିକର ଖବର ଜାଣିବାକୁ ବ୍ୟଗ୍ର ହୋଇଥିଲେ । ସେହି ପିଞ୍ଜରାରେ କେତୋଟି କୁକୁଟ ଅଛି ? (ଏଗାରଟି) ସେ ଯେଉଁ ତାଙ୍କ

ମାଲ୍ୟ ଓ ତିଲକରେ ଭୂଷିତ କରି ଗ୍ରାମବାସୀମାନେ ଜଣାଇଲେ ଯେ ଅମେରିକା ଓ ଭାରତ ମଧ୍ୟରେ ସମୁଦ୍ର, ଗିରି, ପର୍ବତ





ଗୃହପଟେ ବୁଣ୍ଡର ଚୁଅ ଦେଖୁଛନ୍ତି ସେ ଗୁଡ଼ିଏ ବିଦେଶୀ ନା ସ୍ୱଦେଶୀ ଜାତ ? (ଏଗୁଡ଼ିକ ଡାଲଗ୍ରୁ ଅନେକ ଦିନ ଆସନ୍ତୁ ଅଣା ହୋଇଥିଲା) କେତେ ଦୁଧ ଏହି ଗାଈ ଗୁଡ଼ିକ ଦେଉଛି ? (ଏହି ଜାତିର ଗାଈ ଗୁଡ଼ିକ ବଳ ଜାତ ପାଇଁ ବାଛିତ ହୋଇଥିବାରୁ ଦୁଧ ଖୁବ କମ ପରିମାଣରେ ଦିଏ; କିନ୍ତୁ କୃଷି କାର୍ଯ୍ୟ ପାଇଁ ବୃଷ ଓ ବଳଦ ଷଣ୍ ଜାତ କରାଏ)।

ରାସ୍ତାର ଦୁଇକଡ଼ରେ ଧାଡ଼ି ବାନ୍ଧି ଛିଡ଼ାହୋଇ ଥିବା ଲୋକଗୁଡ଼ିକ ପାଖ ଦେଇ ଯାଉଥିବା ସଂକୀର୍ଣ୍ଣ ଓ ଅନାବୃତ ରାସ୍ତା ଦେଇ ପ୍ରେସିଡେଣ୍ଟ ଗ୍ରାମ ଗ୍ରାମ କରଣ ସିଂ ଘରକୁ ଆସିଲେ। ପ୍ରେସିଡେଣ୍ଟଙ୍କୁ ଘର ଭିତରକୁ ଆସିବାର ରାସ୍ତା ଦେଖାଇ ଦେବାକୁ ସେ ଦୃଢ଼ତା ସହିତ କହିଲେ "ନିଶ୍ଚୟ"। ପ୍ରବେଶ ମୁଖରେ ଫୁଲର ନମୁନା ଗଢ଼ା ରଖା ହୋଇ ଥାଏ ଓ ଭିତର ଅଗଣାରେ ସଙ୍ଗେ ସଙ୍ଗେ ଅଳ୍ପ ଲୋକଏ ଅପେକ୍ଷା କରୁଥିଲେ। ପ୍ରେସିଡେଣ୍ଟ ସତର୍କତାର ସହିତ ଏ ଦୁଇଟିର ପାଖ ଦେଇ ଘର ଭିତରକୁ ପଶି ଆସିଲେ। ଘର ଭିତରେ ଥିବା ସ୍ତ୍ରୀ ଲୋକ ମାନଙ୍କୁ ସେମାନଙ୍କର ନିମନ୍ତ୍ରଣ ପାଇଁ ଧନ୍ୟବାଦ ଜଣାଇଲେ।

ପ୍ରେସିଡେଣ୍ଟଙ୍କ ପରବର୍ତ୍ତୀ ବିରାମ ହେଲା ପଞ୍ଚପୁଟଗଡ଼। (ପଞ୍ଚପୁଟର ହେଡ୍‌କ୍ୱାର୍ଟର)। ଏହାର ବାହାରେ ବିରାଟ ଜନତା ପ୍ରେସିଡେଣ୍ଟଙ୍କୁ ଅଭିନନ୍ଦିତ କରିବା ପାଇଁ ଜମା ହୋଇଥାନ୍ତି।

ସେଠାରେ ସେ ଯେଉଁ ରେକର୍ଡଟି ଦେଖିଥିଲେ ତାହାର ଦାମ କେତେ ପଚାରିଥିଲେ। କରଣ ସିଂ କହିଲେ ଯେ ଏହାକୁ ୫୮୨ ରେ କଣା ହୋଇଥିଲା, କିନ୍ତୁ ଅଚଳ ହୋଇ ପଡ଼ିଅଛି। ପ୍ରେସିଡେଣ୍ଟ ଅଫଟେନ- ହାଓ୍ୱାର ଗୋଟିଏ ଭଲ ରେକର୍ଡ କିଣିବାକୁ ୫୦୦୦ ଦାନ କଲେ।

"ଶାନ୍ତିର ଦୂତ ଆଇଜେନ ହାଓ୍ୱାର ଦୀର୍ଘଜୀବୀ ହୁଅନ୍ତୁ" ବୋଲି ଉଦ୍‌ଘୋଷିତ ଜନତା ଧ୍ୱନି କଲେ। ଗ୍ରାମବାସିମାନଙ୍କ ଆନ୍ତରିକ ଶୁଭେଚ୍ଛାକୁ ଅନୁମୋଦନ କରି ପ୍ରେସିଡେଣ୍ଟ ସଂକ୍ଷିପ୍ତ ଅ-ନିର୍ଦ୍ଧାରିତ ବକ୍ତୃତାଟି ଦେଲେ: "ଆପଣ ମାନଙ୍କୁ ନମସ୍କାର। ମୁଁ ଆପଣମାନଙ୍କର ଗ୍ରାମକୁ ଆସି ଖୁବ ଖୁସି ହେଲି। ମୁଁ ପୁଣି ଆପଣମାନଙ୍କ ନିକଟକୁ ଫେରି ଆସିବାର ଆଶା ପୋଷଣ କରେଁ। ଆପଣମାନଙ୍କୁ ଧନ୍ୟବାଦ"। ସେ ତାହାପରେ ଗାଡ଼ୀ ଭିତରୁ ପଶି ଯାଇ ଗାଡ଼ି ବଗଲରେ ଛିଡ଼ା ହୋଇଥିବା ପୁରୁଷ, ସ୍ତ୍ରୀ ଓ ପିଲାମାନଙ୍କୁ ହସ୍ତ ସଞ୍ଚାଳନ କରି ଅଭିନନ୍ଦନ ଜଣାଇଲେ। ତୋରଣର ବିପରୀତ ଦିଗରେ ହିନ୍ଦିରେ ଇଂରାଜୀ ଅକ୍ଷରରେ ଲେଖା ହୋଇଥିଲା "ଧନ୍ୟବାଦ"। ପ୍ରେସିଡେଣ୍ଟ ତିଲପୁତରେ ହେଲିକପ୍ଟରରେ ଆରୋହଣ କଲେ। ସମ୍ରାଟ ଅକବରଙ୍କ ଦ୍ୱାରା ନିର୍ମିତ ଫତେପୁର ସିକ୍ରୀ ପ୍ରେସିଡେଣ୍ଟ ହେଲିକପ୍ଟରରୁ ଦର୍ଶନ କଲେ।

---

ରାମଲୀଲା ପଡ଼ିଆ ଭାରତର ଅନେକ ସଭାସମିତିର ପୀଠସ୍ଥଳ ହୋଇଛି। ମାତ୍ର ଡ୍ୱାଇଟ ଆଇଜେନ ହାଓ୍ୱାର ଭାରତରେ ଶେଷ ସଂଧ୍ୟା କଟାଇବା ସମୟରେ ତାହା ଯେପରି ଦୃଶ୍ୟ ଧାରଣ କରିଥିଲା ଅତୀତରେ କେବେ ହେଲେ ସେପରି ହୋଇ ନଥିଲା।

ରବିବାର ଦିନ ସହରର ସମସ୍ତ ରାସ୍ତାଘାଟରେ ସେହି ଦୀର୍ଘ ପଥ ଅଡ଼କୁ ଧାଇଁ ଥିଲା-ସେଉଁଠି ବିସ୍ତୀର୍ଣ୍ଣ ଶ୍ୟାମଳ ଭୂଖଣ୍ଡଟି ପୁରୁଣା ସହରକୁ ନୂଆ ଦିଲ୍ଲୀ ଠାରୁ ବିଚ୍ଛିନ୍ନ କରି ରଖିଛି; ବାୟୁମଣ୍ଡଳରେ ପୂରି ଉଠିଥିଲା ଉତ୍ତେଜନା। ଫଟୋଗ୍ରାଫର ମାନେ ଅତି ଅଳ୍ପସମୟରେ ଆଇଜେନ ହାଓ୍ୱାର ଛବିକୁ ବିକ୍ରୀ କରୁଥିଲେ। ପିଲାମାନେ କାଗଜର ଖେଳନା ଓ ବେଲୁନ କିଣିଲେ। ମହିଳାମାନେ ଦୂରଦୂର, ଭଲ ସୁତା ଓ ଦୂରଥିବା ଷ୍ଟେସନରୁ ହାତରେ ଧରି ଧୈର୍ଯ୍ୟଶୀଳା ହୋଇ ପ୍ରେସିଡେଣ୍ଟଙ୍କ ଆସୁଥିବା ମୋଟର ଗାଡ଼ୀକୁ ଅପେକ୍ଷା କରି ଥାନ୍ତି। କୃଷକ ମାନେ ଗୋରୁଗାଡ଼ି ଓ ସାଇକେଲ ସାହାଯ୍ୟରେ କୋଡ଼ିଏ ମାଇଲ ବା ତତୋଧିକ ଦୂରରୁ ଆସି ଥାନ୍ତି। ପ୍ରେସିଡେଣ୍ଟଙ୍କ ରାମଲୀଲା ପଡ଼ିଆକୁ ଆସିବା ବାଟ ତୋରଣ, ପୁଷ୍ପ ଓ ପତକା ମାଳାରେ ଶୋଭିତ ହୋଇଥାଏ।

ପ୍ରେସିଡେଣ୍ଟ ଆଇଜେନ ହାଓ୍ୱାର ଓ ଶ୍ରୀ ନେହେରୁ ବାରଟା ଉପ ମଞ୍ଚରୁ ଭାଷଣ ଦେଇଥିଲେ। ଦିଲ୍ଲୀ ମ୍ୟୁନିସିପାଲିଟିର ମେୟର, ଶ୍ରୀ ନୂରଦୀନ ଅହମଦ ଶର୍ମା ମାର୍କିନ୍ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟଙ୍କର ବିଶ୍ୱ ଶାନ୍ତି ପାଇଁ ପ୍ରଗାଢ ପ୍ରଚେଷ୍ଟାକୁ ଅଭିନନ୍ଦନ ଜଣାଇଲେ।

ମେୟରଙ୍କୁ ଧନ୍ୟବାଦ ଜଣାଇ ଡ୍ୱାଇଟ ଆଇଜେନ ହାଓ୍ୱାର କହିଲେ:—

ମଲୂର ଦୁସ୍ତର ବ୍ୟବଧାନ ସତ୍ତ୍ୱେ ବି ଡ୍ୱାଇଟ୍ ଡି. ଆଇଜେନହାଓ୍ୱାର ସେମାନଙ୍କ ପରିବାରର ଜଣେ ଲୋକ



"ମୁଁ ମୋର ସମ୍ମୁଖରେ ଏକ ବିସ୍ମୟକର ଦୃଶ୍ୟ ଦେଖୁଅଛି । ସହଯୋଗୀ ଗଣତନ୍ତ୍ର ଅମେରିକା ଏବଂ ଯେଉଁ ଆଦର୍ଶରେ ଭାରତ ଓ ଅମେରିକା ଏକ ସୂତ୍ରରେ ଗ୍ରଥିତ—ସ୍ୱାଧୀନତା ମାଧ୍ୟମରେ ଶାନ୍ତି ଓ ମୈତ୍ରୀର ପ୍ରତିଷ୍ଠା—ତାହା ପ୍ରତି ଦଶଲକ୍ଷ ଭାରତୀୟଙ୍କର ଅକୁଣ୍ଠ ଜ୍ୱଳନ୍ତ ପ୍ରମାଣ । ଭାରତ ଓ ଅମେରିକା ଯେଉଁ ଆଦର୍ଶ ଅନୁସରଣ କରି ଚାଲୁଛି,—"ସେହି ଆଦର୍ଶ ହେଲା ସ୍ୱାଧୀନତାର ଭିତ୍ତିରେ ଶାନ୍ତି ଓ ମୈତ୍ରୀର ପ୍ରତିଷ୍ଠା···

"ସବୁ ପ୍ରଥମେ ଚାହୁଁ ସ୍ୱାଧୀନତା—ଆମେ ଭାରତୀୟ ଓ ଅମେରିକା ବାସୀ ମାନେ ଏହି କଥା ବିଶ୍ୱାସ କରୁଁ ।

"ସ୍ୱାଧୀନତାର ସଙ୍ଗୀତ ଗାଥା ଏବଂ ମହତ୍ତ୍ୱ ଘୋଷଣା କରି ସବୁ ଯୁଗ ମଧ୍ୟରେ ଯେଉଁ କଣ୍ଠ ସ୍ୱର ସୁସ୍ପଷ୍ଟ ଭାବରେ ସମୁଦ୍ଭାସିତ ହୋଇ ଉଠିଅଛି, ସେହି କଣ୍ଠ ସ୍ୱର ହେଲା ଆପଣ ମାନଙ୍କ ମହାତ୍ମା ଗାନ୍ଧୀଙ୍କର ।

"ଜାତିର ସ୍ୱାଧୀନତା ସମ୍ବନ୍ଧରେ ସେ କହିଛନ୍ତି, ସ୍ୱାଧୀନତା ହେଲା ଭଗବାନଙ୍କର ଦାନ—ପ୍ରତ୍ୟେକ ଜାତିର ଜନ୍ମଗତ ଅଧିକାର ।

"ତାହାଙ୍କର ଏହି ଘୋଷଣାର ଉତ୍ତରରେ ଅମେରିକା କହେ—ଅମେରିକା ମଧ୍ୟ ସେହି କଥାରେ ବିଶ୍ୱାସ କରେ ।

"ବ୍ୟକ୍ତି ସ୍ୱାଧୀନତା ସମ୍ବନ୍ଧରେ ସେ କହିଛନ୍ତି" ଗଣତନ୍ତ୍ର ଏପରି ଏକ ବସ୍ତୁ ନୁହେଁ, ଯେଉଁଠାରେ ମଣିଷ ଭେଡ଼ାଛେଳି ପ୍ରବାହ ଭଳି ଚଳିବ । ଗଣତନ୍ତ୍ରରେ ବ୍ୟକ୍ତିର ବାକ୍ ଓ ମତ ପ୍ରକାଶର ସ୍ୱାଧୀନତା ସବୁ ପ୍ରଥମେ ସୁରକ୍ଷିତ ହେବ" ।

"ତାହାଙ୍କର ସେହି ଘୋଷଣାର ଉତ୍ତରରେ ଅମେରିକା କହେ—ଆମ୍ଭେମାନେ ମଧ୍ୟ ସେହି ଆଦର୍ଶ ବହନ କରୁଁ ।

"ତାହାଙ୍କ ରାଜନୈତିକ ସ୍ୱାଧୀନତାର ଏବଂ ସ୍ୱାଧୀନତାର ଦାବୀ ସମ୍ବନ୍ଧରେ ସେ କହିଛନ୍ତି" ସ୍ୱରାଜ ଅର୍ଜନ ସମ୍ପୂର୍ଣ୍ଣ ଭାବରେ ଆମମାନଙ୍କର ଅଭ୍ୟନ୍ତରୀଣ ଶକ୍ତିର ଉପରେ ଏବଂ ପ୍ରଚଣ୍ଡ ଅବସ୍ଥାର ବିରୁଦ୍ଧରେ ଆମମାନଙ୍କର ସଂଗ୍ରାମ କରିବାର କ୍ଷମତା ଉପରେ ନିର୍ଭର କରେ । ଯେଉଁ ସ୍ୱରାଜ ଲାଭ କରିବା ଓ ରକ୍ଷା କରିବା ପାଇଁ ଅବିଚ୍ଛିନ୍ନ ପ୍ରଚେଷ୍ଟାର ପ୍ରୟୋଜନ ହୁଏ ନାହିଁ, ତାହା ସ୍ୱରାଜ ନୁହେଁ ।'

"ମହାତ୍ମା ଗାନ୍ଧୀଙ୍କ ଯେଉଁ ବାଣୀ ମୁଁ ଉଦ୍ଧୃତ କରି ଅଛି, ମୁଁ ଜାଣେ ଯେ ସେଥିରେ ସେ ଭାରତବାସୀ ସହିତ ଅମେରିକା ଜନଗଣର ଅନ୍ତରର କଥା ଯଥାର୍ଥ ଭାବରେ କହିଛନ୍ତି ।

"ପ୍ରତିରକ୍ଷା ପାଇଁ ଉପଯୁକ୍ତ ସଂସ୍ଥାନ ଜନକ ବ୍ୟବସ୍ଥା ଅବ୍ୟାହତ ରଖା ଅମେରିକାର ଅଧିକାର ଏବଂ ସେହି ସୂତ୍ରରେ ଆମମାନଙ୍କର ଦାୟିତ୍ୱ ରହିଅଛି—ମୋର ନିଶ୍ଚିତ ବିଶ୍ୱାସ, ସମସ୍ତ ମହତ ଲୋକହିଁ ଆମମାନଙ୍କର ଏହି ଦାୟିତ୍ୱ ଓ କର୍ତ୍ତବ୍ୟକୁ ସ୍ୱୀକାର କରିବେ···

"ଗାନ୍ଧୀଜୀ କହିଛନ୍ତି ସ୍ୱାଧୀନତା ଈଶ୍ୱରଙ୍କ ଦାନ । ଏବଂ ଯାହା ଈଶ୍ୱରର ଦାନ ସେଥିରେ ସେମାନଙ୍କର ସନ୍ତାନ ମାନଙ୍କୁ ଦୀର୍ଘକାଳ ବଞ୍ଚିତ ରଖା ଯାଇ ପାରିବ ନାହିଁ··· ।

"ବିଶ୍ୱର ବୃହତ୍ତମ ଗଣତନ୍ତ୍ର ଭାରତ ଏବଂ ଦ୍ୱିତୀୟ ବୃହତ୍ତମ ଗଣତନ୍ତ୍ର ଅମେରିକା ମଧ୍ୟରେ ହଜାର ହଜାର ମାଇଲ ବ୍ୟାପୀ ସମୁଦ୍ର ଓ ମହାଦେଶର ବ୍ୟବଧାନ । କିନ୍ତୁ ଗଣତନ୍ତ୍ର ସମ୍ପର୍କରେ ଆମମାନଙ୍କର ଆଦର୍ଶ ଓ ଧ୍ୟାନ ଧାରଣାର ଦିଗରୁ ଆମ୍ଭେମାନେ ଘନିଷ୍ଠ ପ୍ରତିବେଶୀ । ଆମମାନଙ୍କର ଅଧିକ ଘନିଷ୍ଠ ହେବା ଉଚିତ ।

"ଆମ୍ଭେ ଯେଉଁମାନେ ସ୍ୱାଧୀନ ଏବଂ ଯେଉଁମାନେ ଈଶ୍ୱର ଓ ପ୍ରକୃତିର ସବୁ ଦାନ ଅପେକ୍ଷା ଆମମାନଙ୍କର ସ୍ୱାଧୀନତାକୁ ହିଁ ସର୍ବାପେକ୍ଷା ମୂଲ୍ୟବାନ ବୋଲି ମନେ କରେ, ସେମାନେ ପ୍ରତ୍ୟେକ ଅଧିକ ଘନିଷ୍ଠତର ଭାବରେ ପରିଚିତ ହେବା ଉଚିତ, ପରସ୍ପରକୁ ଅଧିକତର ବିଶ୍ୱାସ କରିବା ଉଚିତ ଏବଂ ପରସ୍ପରକୁ ଅଧିକତର ସାହାଯ୍ୟ କରିବା ଉଚିତ···

"ଆଗାମୀ ଦଶବର୍ଷ ଭିତରେ ଭାରତ ତାହାର ଜନଗଣ ଶକ୍ତି ଓ ସମସ୍ତ ସ୍ୱାଧୀନ ଦେଶର ସମର୍ଥନ ପାଇଲେ କେତେ ଦୂର ସହାୟତା କରିପାରେ, ତାହା ଯେତେବେଳେ ମୁଁ ଚିନ୍ତା କରେ, ସେତେବେଳେ ମୁଁ ତାହାକୁ କଳ୍ପନାରେ ଆଣିପାରେ ନାହିଁ ।

"ଏଠାରେ ପ୍ରାୟ ପଞ୍ଚାଶ କୋଟି ନରନାରୀ ଅର୍ଥନୈତିକ ସମ୍ପ୍ରସାରଣ କାର୍ଯ୍ୟରେ ବ୍ୟାପୃତ ରହିଛନ୍ତି । ଆପଣମାନଙ୍କର କୃଷକର ଉତ୍ପାଦନ କ୍ଷମତା ବିସ୍ମୟକର ଭାବରେ ବୃଦ୍ଧି ପାଇବ···ଏବଂ ଦଳ ବୃଦ୍ଧି କରିବା ଉଦ୍ଦେଶ୍ୟରେ ବଳ ପ୍ରୟୋଗ ନିକଟରେ ନିଜର ସ୍ୱାଧୀନତା ବିସର୍ଜନ ନ ଦେଇ ଆପଣ ମାନେ ତାହା



କରୁଥାଉନ୍ତୁ । ଆପଣମାନଙ୍କର ସମୃଦ୍ଧିର ସଙ୍ଗେ ସଙ୍ଗେ ସମସ୍ତ ପୃଥିବୀ ସମୃଦ୍ଧ ହୋଇ ଉଠିବ··· ।

"ମୁଁ ଆପଣ ମାନଙ୍କୁ ଆଶ୍ୱାସ ଦେଉଛି ଯେ, ଯେତେବେଳେ ସୁଯୋଗ ଆସିବ, ସେତେବେଳେ ମୁଁ ଦୃଢ଼ ଭାବରେ କହିପାରେ ଯେ, ଭାରତରେ ଆମମାନଙ୍କ ସମୟରେ ଅର୍ଥ ବିନିଯୋଗର ଶ୍ରେଷ୍ଠ ସୁଯୋଗ ସୃଷ୍ଟି ହେଉଅଛି—ସ୍ୱାଧୀନତାକୁ ସୁରକ୍ଷିତ କରିବା ପାଇଁ ଏବଂ ବିଶ୍ୱର ସମୃଦ୍ଧି ପାଇଁ ବିନିଯୋଗର ଏହାହିଁ ହେବ ଶ୍ରେଷ୍ଠ ସ୍ଥାନ ।

"ଭାରତ ତାହାର ବିପୁଳ ଜନଶକ୍ତି ସେଭଳି ଏବଂ ବୃହତ୍ତର ପ୍ରଜାତନ୍ତ୍ର ପ୍ରତିଷ୍ଠାର ଦୃଢ଼ ପ୍ରତିଜ୍ଞା ସେଭଳି ମହାନ ଲକ୍ଷ୍ୟ ପଥରେ ଯେ ଅଗ୍ରସର ହୋଇଚାଲିବ ଏ ବିଷୟରେ ମୋର କୌଣସି ସନ୍ଦେହ ନାହିଁ ।

ବିପୁଳ ହର୍ଷଧ୍ୱନି ରାଷ୍ଟ୍ରପତିଙ୍କ ଭାଷଣକୁ ରେଖାଙ୍କିତ କରୁଥାଏ । ବିରାଟ ଜନତା ପୁଣି ଉଲ୍ଲାସ ଧ୍ୱନିରେ ମାତି ଉଠିଲ ଯେତେବେଳେ ପ୍ରଧାନ ମନ୍ତ୍ରୀ ନେହେରୁ କହିଲେ :

"ଏହି ସମୟରେ ଏଠାକୁ ଆପଣଙ୍କର ଆଗମନ ଗୋଟିଏ ବିଶେଷ ଶୁଭ ଘଟଣା । କାରଣ, ଆପଣ ଜଣେ ମହାନ ବ୍ୟକ୍ତି ଓ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ଭାବରେ ପୃଥିବୀର ସର୍ବୋଚ୍ଚ ଶାନ୍ତିର ପତାକା ବହନ କରି ଚାଲିଛନ୍ତି । ବହୁ ଅସୁବିଧା ସତ୍ତ୍ୱେ ମଧ୍ୟ ଆପଣ ଏହି ମହାନ ଉଦ୍ଦେଶ୍ୟ ସାଧନ ପାଇଁ ଦୀର୍ଘପଥ ଅତିକ୍ରମ କରି ଯେ ଆସିଛନ୍ତି, ଆମମାନଙ୍କ ମନ ଓ ହୃଦୟ ଉପରେ ଗଭୀର ରେଖାପାତ କରୁଛି । ହୃଦୟର ଡାକ ମନର ଡାକ ଅପେକ୍ଷା ଗଭୀର ଏବଂ ତାହା ଅଧିକ ଗଭୀର ହୁଏ ଯେତେବେଳେ ଉଭୟ ପକ୍ଷ ତାହା ଉପଲବ୍ଧି କରେ··· ।

"ହଜାର ହଜାର ବର୍ଷର ପୁରୁଣା ଦେଶ-ଭାରତ ବର୍ଷ । ଅତୀତରେ ସମସ୍ତ ବୋଝ ଏହାକୁ ବହନ କରିବାକୁ ହେବ । ନୂତନ ଭାବ ଧାରା ଓ ନବ କାର୍ଯ୍ୟ ସେଭଳି ଯୁକ୍ତରାଷ୍ଟ୍ର ଆମେରିକା ଏକ ନୂଆ ଦେଶ ଗଢ଼ି ଉଠିଛି । ଏହାଦ୍ୱାରା ଆମେମାନେ ଓ ପୃଥିବୀର ସମସ୍ତ ଜାତି ଉପକାର ପାଇ ପାରିବୁ । ଆମେମାନେ ଏହି ନୂଆ ଓ ପୁରୁଣାର ମିଳନକୁ ସ୍ୱାଗତ ଜଣାଉଁ ଏବଂ ଏହା ବରାବର ଆମେମାନେ ରକ୍ଷା କରି ଚାଲିବୁ ।

"ଆପଣ ଭାରତର ବହୁମୁଖୀ ଜୀବନର ଗୋଟିଏ ଚିତ୍ର ଦେଖିଛନ୍ତି···ପରିଶେଷରେ ଆପଣ ଏହି ଦୃଶ୍ୟ ଦେଖିଲେ । ଏଠାରେ ପ୍ରାୟ ୧୦ ଲକ୍ଷ ନରନାରୀ ସମବେତ ହୋଇଛନ୍ତି । ଏଠାରେ ଅନେକ ବଡ଼ ଧରଣର ଜନସଭା ହୋଇଛି । ଓ ଅନେକ ଉତ୍ସବ ଉଦ୍‌ଯାପିତ ହୋଇଛି । ମାତ୍ର ଏହି ମଇଦାନରେ ଏପରି ବିରାଟ ଜନସଭା ଏହା ଆଗରୁ କେବେହେଲେ ହୋଇ ନଥିବ । ଆସନ୍ତା କାଲି ଏଦେଶ ଛାଡ଼ି ଯିବା ପରେ ଅନ୍ଧକାର ଏହି ସଭାଟିର ସ୍ମୃତି ଆପଣଙ୍କର ମନେ ରହିବ । ସେଥି ସଙ୍ଗେ ସଙ୍ଗେ ମନରେ ରହିବ ଯେ, ଭାରତ ତାହାର ହୃଦୟର ଏକାଂଶ ଆପଣଙ୍କୁ ଦାନ କରୁଛି ।"

କାର୍ଯ୍ୟ ସୂଚିକାସ ରାମଲୀଳା ମଇଦାନର ଜନାକୀର୍ଣ୍ଣ ସଭାରୁ ବାହାରି ପ୍ରେସିଡେଣ୍ଟ ଆଇଜେନ ହାଓ୍ୱାର ରାଷ୍ଟ୍ରପତି ଭବନକୁ ପ୍ରଧାନ ମନ୍ତ୍ରୀ ନେହେରୁଙ୍କ ସହିତ ଶାନ୍ତ ସାନ୍ଧ୍ୟ ଭୋଜନ ଲାଗି ମୋଟର ଯୋଗେ ଆସିଲେ । ଦ୍ୱିତୀୟ ଦିନର ବହୁଳ ସମସ୍ୟା ସମାଧାନ ପାଇଁ ଏହାହିଁ ଥିଲ ଦୁଇ ରାଷ୍ଟ୍ରନାୟକଙ୍କ ମଧ୍ୟରେ ସର୍ବଶେଷ ଆଲୋଚନା ।

ତେହେରାନ ଯାତ୍ରାପାଇଁ ପ୍ରସ୍ତୁତ ହେବାପାଇଁ ପ୍ରେସିଡେଣ୍ଟ ଆଇଜେନ ହାଓ୍ୱାର ସୋମବାର ଦିନ ଅତି ପ୍ରତ୍ୟୁଷରୁ ଉଠିଲେ । ସେଠାରେ ରାଜା ସାହାଙ୍କ ସହିତ ଆଲୋଚନା ଓ ସେଠାକାର ସଂଯୋଗ ସେବକ ପ୍ରତିନିଧି ସଭା (ମଜଲିସ)ରେ ଭାଷଣ ଦେଇ ଛ ଘଣ୍ଟା କର୍ମବହୁଳ କାର୍ଯ୍ୟସୂଚୀ ଉପରେ ସମୟ କଟାଇ ରାତ୍ରି ଏଥେନ୍ସରେ ଅତିବାହିତ କରିବେ । ଶାନ୍ତି ପ୍ରଚେଷ୍ଟାରେ ସାହାଯ୍ୟ ଏଠି-ଠାରେ ହିଁ ସେ ସାତଟି ଦେଶ ସଫର ଶେଷ କରିବେ । ଓ୍ୱାସିଂଟନକୁ ଫେରି ଆସିବା ପୂର୍ବରୁ ପ୍ରେସିଡେଣ୍ଟ ଟ୍ୟୁନିସିଆ, ଫ୍ରାନ୍ସ, ସ୍ପେନ ଓ ମରୋକ୍କୋଠାରେ ଅଳ୍ପ ସମୟ ଲାଗି ଅତିବାହିତ କରିବେ ।

ଛଅ ଦଶ ଘଣ୍ଟା—ଏହାହିଁ ଥିଲ ପ୍ରେସିଡେଣ୍ଟ ଆଇଜେନହାଓ୍ୱାରଙ୍କ ଭାରତରେ ସର୍ବମୋଟ ଅବସ୍ଥାନ କାଳ । ଏହା ଖୁବ ସଂକ୍ଷେପ ସମୟ—କିନ୍ତୁ ଏହା ଯେ ବିଶ୍ୱର ଦୁଇ ବୃହତ ଗଣ ତାନ୍ତ୍ରିକ ରାଷ୍ଟ୍ରର ସମ୍ବନ୍ଧ ସୃଷ୍ଟି ପାଇଁ ଐତିହାସିକ ପଦକ୍ଷେପ ଯେ ନୁହେଁ—ଏହା କିଏ ବା କହିବ ? ଭବିଷ୍ୟତର ଶୁଭକାମନା ଓ ପ୍ରଗତି ବଢ଼ିବା ପାଇଁ ଏହା ଯେ ଦୃଢ଼ମୈତ୍ରୀର ପ୍ରଥମ ସୋପାନ ନୁହେଁ କିଏ ବା ବିଶ୍ୱାସ ନ କରିବ ? ଏହି ଅଳ୍ପ ସମୟ ମଧ୍ୟରେ ଦୁଇ ରାଷ୍ଟ୍ର ମଧ୍ୟରେ ଯେଉଁ ଅନ୍ତରସ୍ପର୍ଶୀ ଭାବର ଆଦାନ ପ୍ରଦାନ ହୋଇଥିଲା ତାହା ଯେ ଗୋଟିଏ ସୁଖୀ ଓ ସମୃଦ୍ଧ ବିଶ୍ୱ ଗଢ଼ି ତୋଳିବାରେ ସାହାଯ୍ୟ ନ କରିବ କିଏ ବା ଅବିଶ୍ୱାସ କରିବ ?




ଯେଉଁ ମାନେ ପାଲାମ ବିମାନ ବନ୍ଦରକୁ ପ୍ରେସିଡେଣ୍ଟ ଆଇଜେନ ହାୱାରଙ୍କୁ ବିଦାୟ ଜଣାଇବା ପାଇଁ ଆସିଥିଲେ ସେମାନେ ପାହାନ୍ତିଆ ଶୀତୁଆ ପବନରେ ହିମର ଥଣ୍ଡା ଅନୁଭବ କରିଥିଲେ । ମୁଣ୍ଡ ଉପରେ ନକ୍ଷତ୍ରରାଜି ଖୁବ୍ ଜୋରରେ ଝଲ-ମଲ କରୁଥିଲା । ବିମାନ ବନ୍ଦରରେ ସ୍ୱର୍ଣ୍ଣ ବର୍ଣ୍ଣର ସ୍ଥାଣୁ ହୋଇ ବିମାନଟି ଅପେକ୍ଷା କରୁଥିଲା ସତେ ଯେପରି ସ୍ୱର୍ଗରୁ ରଥଟି ଆସିଛି ଶାନ୍ତି ସାରଥୀଙ୍କୁ ବିଶ୍ୱର ଅପର ପ୍ରାନ୍ତରୁ ସ୍ୱାଧୀନତା ଓ ସୌହାର୍ଦ୍ଦ୍ୟର ବାଣୀ ପ୍ରଚାର ଲାଗି ନେଇ ଯିବା ଉଦ୍ଦେଶ୍ୟରେ । ବିମାନ ବନ୍ଦରକୁ ଆସିଥିବା ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, ପ୍ରଧାନମନ୍ତ୍ରୀ ନେହେରୁ ଓ ଅନ୍ୟାନ୍ୟ ବନ୍ଧୁ ମାନଙ୍କ ସହିତ ପ୍ରେସିଡେଣ୍ଟ ଆଇଜେନ ହାୱାର କରମର୍ଦ୍ଦନ କଲେ । ଜଣେ ପରିଦର୍ଶକ କହୁଥିଲେ "ପ୍ରେସିଡେଣ୍ଟ ଆଇଆଇଜେନ ହାୱାର ଓ ପ୍ରଧାନ ମନ୍ତ୍ରୀ ନେହେରୁ ପ୍ରତ୍ୟେକଙ୍କୁ ବିଦାୟ ଜଣାଇ ପ୍ରାୟ ଅଧ ମିନିଟ କାଳ କଥୋପକଥନ କରିବା ଲାଗି ଛିଡ଼ାହେବାର ଦେଖିଲି । ସେମାନଙ୍କ ମୁଖମଣ୍ଡଳରେ [illegible] ଥିଲା ବିଷାଦର ଗମ୍ଭୀର ଛାୟା-ସତେ ଯେପରି ଦୁଇ ପୁରୁଣା ବନ୍ଧୁ ପ୍ରତ୍ୟେକଙ୍କ ପାଖରୁ ଅନିଚ୍ଛା ସହକାରେ ବିଦାୟ ନେଉଛନ୍ତି । ପ୍ରେସିଡେଣ୍ଟ ଆଇଜେନହାୱାର ବିମାନର ବେଷ୍ଟନୀ ସ୍ଥାନକୁ ଉଠିଲେ । ଉପରେ କ୍ଷଣିକ କାଳ ଛିଡ଼ା ହୋଇ ହସ୍ତ ସଞ୍ଚାଳନ କରି ବିଦାୟ ଜଣାଇଲେ । ସଙ୍ଗେ ସଙ୍ଗେ ବିଶାଳ ଜେଟ ବିମାନଟି ଯେପରି ପ୍ରାଣବନ୍ତ ହୋଇ ଗର୍ଜି ଉଠିଲା । ଆକାଶରୁ ଅନ୍ଧକାର ଦୂରକୁ ହେଉଥିବା ସଙ୍ଗେ ସଙ୍ଗେ ଏହା ଧୀରେ ଧୀରେ ଗତି ସଞ୍ଚାର କରିବାକୁ ଲାଗିଲା । ମୁହୂର୍ତ୍ତ ମଧ୍ୟରେ ଏହା ଉପରକୁ ଉଠିଯାଇ ଗୋଲାପୀ ଅନନ୍ତ ଆକାଶରେ ଲୀନ ହୋଇ ଗଲା ।

"ମୁଁ ଭାରତଭୂମି ଦୁଃଖର ସତ୍ତ୍ୱ ଛାଡ଼ୁଛି ।"

"ଭାରତ ଦର୍ଶନ ମୋର ଜୀବନରେ ଗୋଟିଏ ଅନ୍ତରସ୍ପର୍ଶୀ ଅଭିଜ୍ଞତା ।
ପାଞ୍ଚଦିନ ଅବସ୍ଥା କାଳରେ ମୁଁ ଆପଣମାନଙ୍କର ଶ୍ରଦ୍ଧେୟ ରାଷ୍ଟ୍ରପତି, ସୁଖ୍ୟାତ ପ୍ରଧାନ ମନ୍ତ୍ରୀ
ଏବଂ ଆପଣଙ୍କର ମହାନ ନେତୃବୃନ୍ଦ
ସହିତ ସାକ୍ଷାତ କରିଛି । ମୁଁ ଯେଉଁଠାକୁ ଯାଇଛି
ସେଠାରେ ଆପଣଙ୍କର ଅଗଣିତ ନର ନାରୀର ବନ୍ଧୁତ୍ୱ
ଓ ଆନ୍ତରିକତା ଅନୁଭବ କରିଅଛି ।"

ଅତ୍ରବ ଉଲ୍ଲେଖ ଯୋଗ୍ୟ ଯେ, ମୁଁ ନବ ଭାରତର ମର୍ମବାଣୀ ଅନୁଧାବନ କରିଅଛି ।
ଯୁଗ ଯୁଗାନ୍ତରର ସାଂସ୍କୃତିକ ଐତିହ୍ୟବାଦୀ ଏହି ଦେଶ ।
"ଆଜି ତାହା ସମ୍ମୁଖରେ ମହାନ ଲକ୍ଷ୍ୟ । ଦ୍ରୁତ ରତ୍ ଯେପରି ସେ ଅଗ୍ରସର ହୋଇଚାଲିଛି—
ସୁପ୍ରାଚୀନ ସଦାଚାର ଭିତି ଉପରେ ସେ ଆଜି ଏକ
ଆଧୁନିକ ମହାନ ଗଣତନ୍ତ୍ର ଗଢି ତୋଳି ଅଛି ।"
"ଭାରତ ମୋର ଜୀବନରେ ଗତ ପାଞ୍ଚଦିନ ଏପରି ଏକ
ବିଶାଳ ଆଶା, ଉଲ୍ଲାସ ଓ ବିସ୍ମୟ ଭରି ଦେଇଛି ଯେ ତାହା ମୁଁ
କେବେହେଲେ ଭୁଲି ପାରିବି ନାହିଁ ।"

ଭାରତର ଜଣେ ଜଣଙ୍କ,
ପ୍ରେସିଡେଣ୍ଟ ଅଇଜେନ ହାଓଆରଙ୍କ ବିଦାୟ ବାଣୀ

[illegible]

